ପ୍ରକାଶକ

ମନୋଜ କୁମାର ମହାପାତ୍ର
**ଗ୍ରନ୍ଥମନ୍ଦିର**, ବିନୋଦବିହାରୀ, କଟକ-୨

ପ୍ରକାଶନ ପରିଚାଳନା
ଅଭିରାମ ମହାପାତ୍ର

ଡି.ଟି.ପି. ଓ ମୁଦ୍ରଣ
ତପନ କୁମାର ମହାପାତ୍ର
**ଅପ୍‌ଟିମା ଅଫ୍‌ସେଟ୍ ପ୍ରିଣ୍ଟ୍‌ସ,**
ସୂତାହାଟ, କଟକ-୧

ପ୍ରଥମ ଗ୍ରନ୍ଥମନ୍ଦିର ସଂସ୍କରଣ   ୧୯୭୬
ଦ୍ୱିତୀୟ ସଂସ୍କରଣ   ୧୯୮୧
ତୃତୀୟ ସଂସ୍କରଣ   ୨୦୦୭
(୭୦୦)

ମୂଲ୍ୟ   ଟ. ୬୦.୦୦
(ପଲ୍‌ପ କଭର୍)

କଲ୍ୟାଣୀୟା କଲ୍ୟାଣୀ,

ଏହି ବହିଖଣ୍ଡ ତୋ ହାତରେ ଦେବାପାଇଁ ଚିଠି ଲେଖି ରଖିଥିଲି । ଛାପା ହେବା ବାଟରେ ସେ ହଜିଗଲା କୁଆଡ଼େ— ମୁଁ ଜାଣେନାହିଁ । ଏମିତି କେତେ ଜିନିଷ ହଜିଯାଏ— ହଜି ହଜି ଯାଉଥାଏ ମଣିଷର ଅଜାଣତରେ— ଲକ୍ଷ୍ୟ-ସ୍ଥଳରେ ପହଞ୍ଚିବା ଆଗରୁ । ଏଇ ହଜିଗଲାର ମଲା ସମାଧି ଉପରେ ଯେମିତି ଜୀଅନ୍ତା ମଣିଷର ଖାଲି ଧଡ଼ଟା ପ୍ରଳୟ ନାଚ ନାଚୁଛି ସକାଳ ସଞ୍ଜେ— ଅନବରତ ।

ଏଇ ନାଚ ନାଚି ନାଚି ଯିଏ ଥକିଗଲାଣି— ହାତଗୋଡ଼ ରହିଗଲାଣି ଯା'ର— ଅଥଚ ବାଜା ବନ୍ଦହେଇନାହିଁ— ଡମ୍ବରୁ ଖସିପଡ଼ିନାହିଁ ହାତରୁ— ଆଖିରେ ରକତ ଉକୁଟି ଉଠୁଛି— ମୁହଁ ତାର ସିଠା— ଦେହ ତାର ଅବଶ— ମନ ତାର ଦୁର୍ବଳ, ଚଞ୍ଚଳ, ଅସମର୍ଥ, ଖାଲି କାମନାରେ ହନ୍ତସନ୍ତ ହେଉଛି ପଡ଼ି— ପ୍ରାଣଟା ତା'ର ଉଜୁଡ଼ି ଗଲାଣି— କାଚବାସନପରି ହାତରୁ ପଡ଼ି ଟିକି ଟିକି ଚୂନା ଚୂନା ହୋଇଗଲାଣି, ସେ ଯେତେବେଳେ ଚିତ୍କାରକରି କହେ— 'ମୁଁ ଜୀଇଛି— ମୁଁ ଜୀଇଛି' ବୋଲି ସେତେବେଳେ ସେ କରେ କ'ଣ ? ଦୁନିଆ ତାକୁ ହସୁଥିବ— ବିଦ୍ରୂପ କରୁଥିବ— ନୁହେଁ ? ନିର୍ମମ ଦୁନିଆ !

ହସୁ— ହସୁ ସେ ଯେତେ ହସିବ ପଛେ । ସେ ହସରେ ତା'ର କିଛି ଯାଏ ଆସେ ନାହିଁ । ସେ ନିଜକୁ ଚାହିଁ ଯଉଁ ବିଦ୍ରୂପ ହସ ଟିକକ ମଝିରେ ମଝିରେ ଥରେ ଥରେ ହସିଦିଏ, ସେଇ ହସରେଇ ଥାଏ ତା'ର ମୂଳ— ଜୀବନର ଇତିହାସ ଲେଖା— ନା—ନ, ଜୀବନର ସଂକ୍ଷିପ୍ତ ଟୀକା ।

ସେଇ ହସର ରଙ୍ଗ ତୂଳିରେ ଲେଖା ଏଇ ଜୀଅନ୍ତା ମଣିଷ । ଆପଣାକୁ ଆପେ ପ୍ରତାରିତ କରିବାର ପ୍ରବୃତ୍ତି ଉପରେ ଠିଆହେଇଛି, କଥା-ସାହିତ୍ୟର ବିରାଟ ସୌଧ ।

ମଣିଷ କ'ଣ ସତେ ଜୀଇଥାଏ କଲ୍ୟାଣି ! ତୁ କ'ଣ ଜୀଇଛୁ ଆଜି ? ସେଇ ପିଲାଦିନର କଲ୍ୟାଣୀ ଯାହାକୁ କୋଡ଼ରେ ଧରି ଖେଳଉଁ ଖେଳଉଁ କାଠ ଦେହରେ ଓଠ ବାଜି ରକତ ଚୁଇପଡ଼ିଲା, ସେ କଲ୍ୟାଣୀ କଉଁଠି ମରି ମାଟି ହେଇଗଲାଣି । ଯଉ କଲ୍ୟାଣୀ ସେଦିନ ପୀଡ଼ିତ ଭାଇ ପାଖରେ ମୁଣ୍ଡ ଆଉଁସି ଦେଉଁ ଦେଉଁ ମମତାର ସ୍ତୂପ ତୋଳିଦେଇଯାଉଥିଲା, ସେ କଲ୍ୟାଣୀ ହୁଏତ ସେଇ ମମତା ସାଙ୍ଗରେ ଧୂଳିରେ ମିଶି ଧୂଳି ହେଇଗଲାଣି । ସେଠି ଆଜି ନୂଆ କଲ୍ୟାଣୀ— କୋଳରେ ତା'ର ଛୁଆ— ପାଖରେ ତା'ର ସ୍ୱାମୀ— ଦୁନିଆକୁ ସେ କ'ଣ ଦେଇଯାଉଛି ବୋଲି ତା ପ୍ରାଣରେ ଗର୍ବ । କିନ୍ତୁ ମୋ କଲ୍ୟାଣୀ କାହିଁ ? ମୋର ସେ ଟିକିଭଉଣୀଟି କାହିଁ ? ହଜିଗଲାଣି ।

ତଥାପି ମଣିଷ ନିଜକୁ ଜୀଇଛି ବୋଲି ଛଳୁଥାଏ— ସେଇ ଛଳନାଇ ଜୀବନ— ସେଇ ଛଳନାକୁ ନେଇ— ସେଇ ମଲା ଜୀବନଟାକୁ ନେଇ ମଣିଷ, ଜୀଅନ୍ତା ମଣିଷ । ନିଜକୁ ମଲା ବୋଲି କହିବାକୁ, ସତକୁ ସତ ବୋଲି କହିବାକୁ ଯା'ର ସାହସନାହିଁ, ସେଇ— ତା'ରି ନାଁ— ଜୀଅନ୍ତା ମଣିଷ ।

ମଣିଷ ଆପଣାର ଭୂତଟାକୁ ଆପେ ଡରେ । ଆପଣାର ମରଣକୁ ସେ ଭୁଲିଯିବାକୁ ଚାହେଁ । ଭୁଲିବାକୁ ଚେଷ୍ଟା କରି କରି ମଣିଷ ସର୍ଜନାର କେତେ କାଳ ପରେ ସଫଳ ହେଇଛି ଆଜି ତା'ର ଉଦ୍ୟମ । ମଣିଷ ଆଜି ସେଇ ଭୁଲାପଣକୁ ସ୍ୱଭାବରେ ପରିଣତ କରିନେଇଛି– ଭୁଲିଯିବା ଟା ଆଜି ନିହାତି– ନିତାନ୍ତ ସ୍ୱାଭାବିକ । ମରିବ ବୋଲି ସେ କେବେ ମନେ ବି ପକାଏନାହିଁ ।

ଆଜି ଯିଏ ମରିବ ବୋଲି ମନେପକାଇବାକୁ ଚାହେଁ, ଯିଏ ଅନ୍ୟର ମଲା ମଡ଼ାଟାକୁ ଦେଖି ଛାତି ଭିତରର ଧଡ଼ଧଡ଼ଟାକୁ ବିଶ୍ଳେଷଣ କରି ଦେଖେ, ଯିଏ ମରିବ ବୋଲି ମନ କରେ– ଭାବେ, ଯିଏ ଏଇ ମଲା ମଣିଷର ଜୀବନ ସାଧନାକୁ– ଯୁଗ ଯୁଗ ପୁରୁଷାନୁକ୍ରମିକ ଜୀବସୃଷ୍ଟିର ପରମ୍ପରା ଗତ ସାଧନାକୁ ଭୁଲିଯିବାକୁ ଚେଷ୍ଟା କରେ– ତାକୁ ଆଜି ବିପରୀତ ସାଧନା କରିବାକୁ ପଡ଼େ– ଗାଇବାକୁ ହୁଏ– 'ନଳିନୀଦଳଗତ ଜଳମପିରଳମ୍ ।'

ଏ ବିପରୀତ ସାଧନା କେଡ଼େ ନିର୍ମମ, କେଡ଼େ କଠୋର, କେଡ଼େ ଆୟାସସାଧ ! ଋଷି ସନ୍ନ୍ୟାସୀଙ୍କର ସାଧନା ସେ । ତୁ ମୁଁ, ଗଲା ଅଇଲାଙ୍କ ପକ୍ଷରେ ସେ କେଡ଼େ ବିରାଟ, କେଡ଼େ ଅସମ୍ଭବ !

କିନ୍ତୁ ସେଇ ଅସମ୍ଭବ, ସେଇ ବିରାଟ, ସେଇ କଠୋର ନିର୍ମମ ସାଧନା କେଡ଼େ ସହଜ ହୋଇଯାଏ ସତେ, ଯେତେବେଳେ ମଣିଷ ଏଇ ଚଲାଫେରା ନିତିଦିନିଆ ସଂସାରୀ ମଣିଷ, ଆଉ ଗୋଟାଏ ମଲା ମଣିଷର ଜୀଅନ୍ତା ଧଡ଼ଟାକୁ– ଜୀବନ୍ତ ଭୂତଟାକୁ ବିଶ୍ୱାସ କରି କରି, ଅବିଶ୍ୱାସର ଅଗ୍ନିଦାହରେ ଆପଣାର ଆପଣାତ୍ୱକୁ ଆହୁତି ଦେଇ ଦେଇ ନିଜକୁ ନିଃଶେଷ କରିଦିଏ– ନିଜର ଜୀଅନ୍ତା ଧଡ଼ଟାକୁ ବି ସେଇ ଅଇଘେରାରେ ଆଖିବୁଜିକି ଫିଙ୍ଗିଦେଇ ଚାଲିଯାଏ– କାହାରି କଥା ନ ମାନି– ଆପଣାର ବୋଲ ନ ଶୁଣି– ସେତେବେଳେ– ସେତେବେଳେ ସେ କରେ କ'ଣ– କରେ କ'ଣ କଲ୍ୟାଣୀ ?

ଭଲ ପାଇ ମଣିଷ ମରିବାକୁ ଯାଏ । ଭଲ ପାଇ ମଣିଷ ମରି ଶିଖେ । ଭଲ ନ ପାଇବା ମଣିଷର ମରିବାକୁ ସାହସ ହୁଏନାହିଁ । ଭଲପାଇଚି ବୋଲି ମରିବାକୁ ନ ଚାହୁଁ କେହି– କିନ୍ତୁ ମରିବାପାଇଁ ହୁଏତ ଭଲପାଇବା ଦରକାର ।

ଭଲପାଇବା ଲୋକ ମରୁ ବା ବଞ୍ଚୁ– ଜୀବନପାଇଁ ମଣିଷ ଭଲପାଉ ବା ଭଲପାଇବାପାଇଁ ମଣିଷ ଦେହ ଧରି ରହୁ, ସେ ଆଉ ଲୋକଙ୍କ କଥା– ଏଇ ଜୀଅନ୍ତା ମଣିଷ ଭଳି କଥାର କଥା– ହୁଏତ ଗପର ଗପ । କିନ୍ତୁ ମୁଁ ଏତିକି କହିବି, ଯିଏ ଭଲପାଇବାର ଯନ୍ତ୍ରଣାଟାକୁ ସହିବାପାଇଁ, ଭଲପାଇବାର ବ୍ୟଥାର ଦାନକୁ ଖଟୁଲିରେ ଥାପି ପୂଜା କରିବା ପାଇଁ ଜୀବନକୁ ସଞ୍ଚି ରଖେ– ସେଇ ମୋର ପୂଜ୍ୟ– ସେଇ ମୋର ଆଦର୍ଶ ।

ସାତ ବର୍ଷ ତଳେ ଏଇ କଥା ଲେଖିଥିଲି । ଆଜି ବି ସେ ମୋତେ ଜୀବନ୍ତ ସତ୍ୟ ପରି ମନେହେଉଛି ।

ତୁ କେଉଁଠି ? ମୁଁ କେଉଁଠି ! ଜେଲ୍ ଯିବି ଯିବି ବୋଲି ହେଉଛି – ସେତିକିବେଳେ ଜୀଅନ୍ତା ମଣିଷର ଆବିର୍ଭାବ ।

ଘରଦ୍ୱାରର ମମତା... କୁଆଡ଼େ କର୍ପୂର ଭଳି ଉଡ଼ିଯାଉଥିଲା । ସତ ସବୁ ମିଛ ହେଇ ଯାଉଥିଲେ । ସେତେବେଳେ ଏଇ ସତ ଦୁନିଆରୁ ଯାଇ ମିଛ ଦୁନିଆର ଗୋଟାଏ ନମୁନା ଜେଲଖାନାରେ ଗୋଟେ ଗୋଡ଼ ରଖି ଆରମ୍ଭିଥିଲି ଏ ଲେଖା । ଲେଖାଟା ବି ବହୁଦିନ କାରାଦଣ୍ଡ ଭୋଗି ଆଜି ବାହାରୁଛି ।

ମୋର ଭାଗ୍ୟ ସେ– ଦୁର୍ଭାଗ୍ୟ କହ ବା ସୌଭାଗ୍ୟ କହ ।

ତୋତେ କେମିତି ଲାଗିବ କେଜାଣି; କିନ୍ତୁ ଏତିକି ମୋର ତୋତେ, ତୋ ଭଳି ଯେଉଁମାନେ ମୋଠୁଁ ଉପଦେଶ ଚାହିଁଲେ ସେମାନଙ୍କୁ ଦାନ ।

ତୋର

୧୯୪୫ ଭାଇ

# ଦେହ

ପରୀକ୍ଷା ସମୟ । ଚିଠି ଆସିଲା, ଭାଇଙ୍କର ବାହାଘର । ଦୁଇଦିନ ରହିଲା ପରୀକ୍ଷା । ପରୀକ୍ଷା ଭିତରେ ବାହାଘର ହୋଇଯିବ ।

ବାହାଘର । ଭାଇଙ୍କର ବାହାଘର । ଜୀବନରେ ଥରେ । ଭାଇ ତ ଆଉଥରେ ବାହା ହେବେନାହିଁ ମୋପାଇଁ ! ଏ ସୁଯୋଗ ଛାଡ଼ିଦେଲେ ଆଉ କ'ଣ ପାଇବି— ଆଉ କ'ଣ ଫୁର୍ତ୍ତି କରିପାରିବି— ଆଜି ଯେମିତି କରନ୍ତି ! ଅସମ୍ଭବ । ମନଟା ବଡ଼ ଅସ୍ଥିର ହେଲା । ପଢ଼ାପଢ଼ିରେ ମୋଟେ ମନଲାଗିଲାନାହିଁ । ବାପାଙ୍କ ଉପରେ ଭାରି ରାଗ ହେଲା । ଏମିତି ହଠାତ୍ ବାହାଘରଟା କରିବା କି ଦରକାର ଥିଲା ? ମୋ ଭାଇଙ୍କି କ'ଣ କନିଆ ଅପୂର୍ବ !

ବାହାଘର ! ପୁଣି ବଡ଼ଭାଇର ବାହାଘର ! ନୂଆବୋଉ ଆସିବ । କେତେ ଥଟ୍ଟା— କେତେ ଗାପରା— ଯାଃ, ସବୁ ମାଟିହେଇଗଲା । ଏ ସମୟଟା— ଏଇ ବାହାଘର ବେଳଟା ସିନା ଥଟ୍ଟା କରିବାର କଥା— ଯାକୁ ଛାଡ଼ିଦେଲେ, ପରେ ହଜାର ଥଟ୍ଟା କଲେ ବି ଆଉ କ'ଣ ସେ ସଜ ଥାଏ ? ଯାଃ, ସବୁ ମାଟିହେଇଗଲା— ସବୁ ଫସରଫାଟିଗଲା । ବାପା ବଡ଼ ଇଏ ! ଯାଃ !

ଭାଇ ରାଜିହେଲେ ବି ! ଯିଏ ବାହା ହୁଏ, ତାର ଗୋଟାଏ କି ମଉଜ ? ମଉଜ ସାଙ୍ଗସାଥୀଙ୍କର— ଛୁଆପିଲାଙ୍କର । ବଡ଼ଭାଇ ବାହା ହେଲେ, ସାନ ସାନ ଭାଇ ଭଉଣୀଙ୍କର ଯଉଁ ମଉଜ ! —ଯାଃ, ସବୁ ତ ଗଲା । ମନଟା ମୋର ଖରାପ ହେଇଗଲା । ପଢ଼ାପଢ଼ି, ପରୀକ୍ଷା ସବୁ ଛାଡ଼ିଛୁଡ଼ି ଦେଇ ଘରକୁ ଏକାଥରେ ଉଡ଼ନ୍ଛୁ ଦେବି ବୋଲି ବେଳେ ବେଳେ ମନ ମାଡ଼ିପଡୁଥାଏ— ଭାରି ମାଡ଼ିପଡୁଥାଏ; କିନ୍ତୁ ବାପାଙ୍କ ଶାସନ— ଭାଇଙ୍କ ତେଜ, ମନରେ ପଡ଼ିଗଲେ ଛାତି ଥରିଉଠେ । ମଉଜର ଯାବତ କଳ୍ପନା ବାରୁଦ ଭଳିଆ ଜଳିଉଠି ଫସ୍‌କିନା କୁଆଡ଼େ ଲିଭିଯାଏ ।

ବାଧହେଇ ପରୀକ୍ଷା ଦେଲି । ପରୀକ୍ଷାରେ କ'ଣ ହେଲା ଜାଣେନାହିଁ । କିନ୍ତୁ ପରୀକ୍ଷା ଦେଇସାରି ଆଉ ଘରକୁ ଗଲିନାହିଁ । ଭାଇ ଲେଖିଲେ । ବାପା ଲେଖିଥିଲେ । ମୁଁ ଗଲିନାହିଁ । ରାଗରେ ଖାଲି କୁହୁଳୁଥାଏଁ । ବାହାଘର ସରିଗଲାଣି । ଏବେ ଯାଇ ମୁଁ କାହାର କ'ଣ କରିବି ? ଲେଖିଦେଲି— ପରୀକ୍ଷାରେ ଭାରି ଖରାପ ହେଇଛି । ମୁଁ ଏଥର ଛୁଟିଟା ଏଇଠି ରହି ପଢ଼ିବି । ଟଙ୍କା ପଠାଇବେ ।

ଦୁଇଦିନ ପରେ । ଚିଠି ଆସିଲା । ଦେଇ ଲେଖିଛନ୍ତି ××× ତୋ ନୂଆବୋଉ ତୋତେ ଦେଖିବ ବୋଲି ଭାରି ମନକରିଚି । ମୋତେ ଯାଉଣୁ ଆସୁଣୁ ବ୍ୟସ୍ତ କରୁଚି । ତୁ ଦିନକପାଇଁ ଆସିବୁ । ଦିନୁଟେ ରହି ଚାଲିଯିବୁ ପଛେ । ବାପା କହୁଛନ୍ତି, ଆସିଲେ ଟଙ୍କା ଦେବେ । ×××

ଗଲେ ଟଙ୍କା ଆଣିବି । ବାପା ଭାରି ବୁଦ୍ଧିଆ । ନଗଲେ ଟଙ୍କା ମିଳିବନାହିଁ । କିମିତି ନମିଳିବ ଦେଖିବା ! ଚିଠି ଲେଖିବି ପୁଣି ଯେ ଦିହ ବଡ଼ ଖରାପ– ହାସପାତାଳରେ ଅଛି । ନାଇଁ, ସେକଥା ଲେଖିଲେ ବାପା ଚାଲିଆସିବେ । ଖାଲି ଲେଖିଦେବି, ଦିହ ଖରାପ ଟଙ୍କା ପଠାଅ– ଔଷଧ କିଣାହେବ– ଡାକ୍ତର ଫିସ୍ ବାକି । ନଇଲେ ତାର କରିଦେବି ।

କିନ୍ତୁ କଥାଟା ତ ସେଠି ଅଟକୁନଥିଲା । ଅଟକୁଥିଲା ଆଉ ଜାଗେ । ନୂଆବୋଉ ! ନୂଆବୋଉ ମନକରିଛନ୍ତି ମୋତେ ଦେଖିବେ । ନୂଆବୋଉ ! ନୂଆବୋଉ ବୋଲି ସେ କି ଅପୂର୍ବ ଜିନିଷ କି ଇମିତି ! ଆଗରୁ ମୋର ନୂଆବୋଉ କେହି ନଥିଲେ । ହଁ, ସାଇପଡ଼ିଶାରେ ଜଣେ ଅଧେ କାହାକୁ ଡାକୁଥିଲି ନୂଆବୋଉ ବୋଲି । ସେ ଏ ନୂଆବୋଉ ଭଳି ନୁହେଁ । ଏ ନୂଆଲୋକଟିକୁ ଯାହାକୁ ମୁଁ ଜାଣେନାହିଁ, ଚିହ୍ନେନାହିଁ, ଦେଖିନାହିଁ, ଶୁଣିନାହିଁ, ତାକୁ ଯାଇ ଯେଡ଼େ ସରାଗରେ, ଯେଡ଼େ ଶରଧାରେ, ଛାତିର ଯେତେ ଭିତରରୁ କାଢ଼ି ନୂଆବୋଉ ବୋଲି ଡାକିବି, ସାଇପଡ଼ିଶାରେ ହଜାରେ ଲକ୍ଷେ ନୂଆବୋଉ ଥିଲେ ବି କ'ଣ ତାଙ୍କୁ ସେଇମିତି ଜୋର ଦେଇ ଡାକିପାରିବି ? ଏ ନୂଆବୋଉ ଡାକ ଭଳି ଡାକ ମୁଁ କାହାରିକି ଡାକିନାହିଁ । ଏପର୍ଯ୍ୟନ୍ତ ଡାକି ନଥିଲେ ବି ଖାଲି ଭାବିଲା ବେଳକୁ ମୋତେ କେତେ ଭଲଲାଗୁଛି– କେଡ଼େ ମିଠାଲାଗୁଛି ।

ନୂଆବୋଉ ! ପୁଣି ମୋ ନୂଆବୋଉ ! ଆଉ କାହାରି ନୂଆବୋଉ ନୁହେଁ । ଆଉ କାହାରି ଦାବିନାହିଁ ତାଙ୍କ ଉପରେ । ସେ ପରା ମୋ ନୂଆବୋଉ ! ମୋର କେତେ ଦାବି ତାଙ୍କ ପାଖରେ !–ମୋର କେତେ ଅଳି ତାଙ୍କଠି !–ସେଇ ନୂଆବୋଉ ମୋତେ ଡାକିଛନ୍ତି– ମୋତେ ଦେଖିବେ ବୋଲି ମନକରିଛନ୍ତି– ମୁଁ ନଯିବି କେମିତି ? ନା ନିଶ୍ଚେ ଯିବି ।

ନୂଆବୋଉ ଭାରି ସୁନ୍ଦରୀ ହୋଇଥିବେ– ମୁଁ ମନେ ମନେ ଭାବେଁ । ହଁ, ହେଇଥିବେ । ନିଶ୍ଚେ ହେଇଥିବେ । ବାପା କ'ଣ ଆଉ ନଦେଖି ନଚାହିଁ କରିଥିବେ ନା ? ସେ ନିଶ୍ଚୟ ଖୁବ୍ ସୁନ୍ଦରୀ ହେଇଥିବେ । ଲାଜ କରୁଥିବେ– ଓଢ଼ଣା ଦେଉଥିବେ – ଚୁ ଚୁ କରି ଡାକୁଥିବେ । ମୁଁ ଗଲେ ମୋତେ ବି ପହିଲୁ ପହିଲୁ ଟିକିଏ ଲାଜ କରିବେନାହିଁ କ'ଣ ଆଡ଼ ଉହାଡ଼ରେ....ହଁ, ଏଡ଼େ ଦିଅରଟା !

ଆଚ୍ଛା ମୁଁ ଜାଣିଯିବି । ନୂଆବୋଉ ତ ଓଢ଼ଣା ପକେଇ ବେଙ୍ଗଟି ଭଳିଆ ବସିଥିବେ । ମୁଁ ଯାଇ ଜୁହାରଟିଏ ହେବି । ସେ ମୋତେ ଚିହ୍ନିବେ କିମିତି ! ଲୋକେ କହିଦେବେ ନାହିଁ ? କିନ୍ତୁ ସେ ମୋତେ କଥାକହିବେନାହିଁ, ମୁଁ ଯାଇ ସେଠି ଠିଆହୋଇ ରହିବି, ଦାରୁଭୂତ ମୁରାରି ଭଳିଆ– ନା, ମୁଁ ଯିବିନାହିଁ ! ନୂଆବୋଉ ଯଦି ଆଗ ମୋତେ କଥା ନକହିବେ, ତାହାହେଲେ ମୁଁ କେଉଁ ଯିବିନାହିଁ । ଏକଥା ନିଜେ ନୂଆବୋଉଙ୍କ ପାଖକୁ ଲେଖିଦେବି– ଯା ହବ ହଉ ପଛେ ।

କିନ୍ତୁ ଗଲି । ପାଞ୍ଚ ମିନିଟ୍‌ରେ ବିଛଣାପତ୍ର ଗୋଟେଇପୋଟେଇ ବାହାରିପଡ଼ିଲି । ଷ୍ଟେସନ୍‌ରେ ପହଞ୍ଚିଲାବେଳକୁ ଗାର୍ଡ଼ ହୁଇସିଲ୍ ଦେଇଦେଲାଣି । ଗୋଟାଏ ହାତରେ ସୁଟକେଶ୍ ଆଉ ଗୋଟାଏ ହାତରେ ବେଡ଼ିଂଟା ଧରି ଦୌଡ଼ିଲି । ବେଡ଼ିଂଟାକୁ ଭିତରକୁ

ଫିଙ୍ଗିଦେଇ ଚଢ଼ିବସିଲି । ଗାଡ଼ି ଛାଡ଼ିଦେଲାଣି । କବାଟ ଖୋଲି ଭିତରକୁ ଗଲି । ବାହାରକୁ ଚାହିଁ ଦେଖିଲି, ବିନୋଦ– ପ୍ଲାଟଫର୍ମରେ ଠିଆହୋଇଛି ।

କିରେ, ବିଭୂତି ?

ନୂଆବୋଉ ! –ଏତିକି କହିପାରିଲି ।

ଗାଡ଼ି ଜୋର୍‌ରେ ଛାଡ଼ିଦେଲା । ମୁଁ ଯାଇ ନିଶ୍ଚିନ୍ତରେ ବସିଲି । ଗାଡ଼ି ଖୁବ୍ ଜୋର୍‌ରେ ଆମ ଷ୍ଟେସନ ଆଡ଼କୁ ଧାଉଁଥାଏ । ମୋର କାହିଁକି ମନଟା କିମିତି କିମିତି ହେଉଥାଏ– ନଯାଆନ୍ତି କି ? ଘରଟା ମୋତେ ନୂଆ ନୂଆ ଲାଗିବ । ଗୋଟାଏ ନିରୋଳା ନୂଆ ଲୋକଟାଏ ଆସିଛି– ସେ ପୁଣି ଅଚିହ୍ନା, କେତେ ଲୋକ ଆସୁଥିବେ ଯାଉଥିବେ । ବନ୍ଧୁ ବାନ୍ଧବ ଯିଏ ସବୁ ବାହାଘରକୁ ଆସିଥିବେ; ତାଙ୍କ ଭିତରୁ ବି କେହି କେହି ଥିବେ– ସମସ୍ତେ ଯାଇନଥିବେ ।

କିଏ– ବିଭୂତି ? କିରେ, କେତେବେଳେ ଅଇଲୁ କି ? –କିଏ ପଚାରିବ ।

ସେ ପଚାରିବାରେ ଯେମିତି ଗୋଟାଏ ଶ୍ଳେଷ– ମୁଁ ବାହାଘରକୁ ଆସିପାରିନଥିଲି ବୋଲି ।

କେହି ପଚାରିବ– କିରେ, ଦେହପା' ଭଲ ତ ? ଯେମିତି ମୋ ଦିହପା'ର ଭଲ ମନ୍ଦ ସାଙ୍ଗରେ ତାଙ୍କ ଦିହପା'ର କେଜାଣି କେତେ ଲଗା ! ଆଉ ମୁଁ ନଆସିପାରିଛି ବୋଲି ବାହାଘର ମଉଜ ବନ୍ଦ !

କିଏ ମୁରବିଆନା କରିବ– କିରେ, ପରୀକ୍ଷାରେ କେମିତି ହେଲା ?

ଯେମିତି ମୁଁ ଜଣେ ଭାରି ପଢୁଆପିଲା– ପରୀକ୍ଷା ବୋଲି, ବାହାଘର– ପୁଣି ଭାଇ ବାହାଘରକୁ ବି ଅଇଲିନାହିଁ । ପଢ଼ାରେ ମୋର ଭାରି ମନ । ଆଉ ମୋର ଏଇ ପଢ଼ାରେ ମନ ଦେବା ନଦେବା ନେଇ ଯେମିତି ସମସ୍ତଙ୍କ ମଥା ଘୂରେଇଛି ।

ମୁହଁରେ କେହି ନକହିଲେ ବି ସମସ୍ତଙ୍କର ମୋ ପ୍ରତି ଦୟା ହେଉଥିବ ଯେ ମୋ ଭାଇ ବାହାଘରକୁ ମୁଁ ବିଚାରା ଆସିପାରିଲିନାହିଁ । ସେଇ ଦୟା, ଅନୁକମ୍ପାର କରୁଣ ଭାବଟା ମୋତେ ଦେଖିବାକ୍ଷଣି ସମସ୍ତଙ୍କ ମୁହଁରେ ଖେଳୁଥିବ, ଆଉ ନିଜେ ବିବାହରେ ଉପଭୋଗ କରିବାର ସୁଯୋଗ ପାଇଥିବା ଗୌରବରେ ସମସ୍ତଙ୍କ ମୁହଁ ଗମ୍ଭୀର ହୋଇଉଠୁଥିବ । ମୁଁ ତା ଦେଖିପାରିବିନାହିଁ– ମୁଁ ତାକୁ ସହ୍ୟ କରିପାରିବି ନାହିଁ–ନା ନା– ମୁଁ ଯିବିନାହିଁ ।

କିନ୍ତୁ ନୂଆବୋଉ ଯେ କହିଛନ୍ତି– ନୂଆବୋଉ ମନକରିଛନ୍ତି ମୋତେ ଦେଖିବେ ବୋଲି । ନଗଲେ ଦୁଃଖ କରିବେ । ନା– ମୁଁ ଯିବି ।

ଆଉ ଗୋଟାଏ କଥା ଏକା । ଏକାବେଳକେ ନୂଆମଣିଷ– କେମିତି ତାଙ୍କ ଆଗରେ ଠିଆହେବି ? କ'ଣ ଯାଇ କହିବି ? ସେ ଯଦି ଆଗ କଥାନକହନ୍ତି– ମୁଁ ତାଙ୍କୁ ଆଗ କ'ଣ ପଚାରିବି ! ସେ ଯଦି ବୁଝିପାରନ୍ତି ଯେ ମୁଁ ରାଗ କରି ଘରକୁ ଆସୁନଥିଲି– ନା-ନା– ମୁଁ ଫେରିଯିବି–ମୁଁ ଘରକୁ ଯିବିନାହିଁ ।

ଗୋଟାଏ କଥା ମନେପଡ଼ିଲା । ନୂଆବୋଉକୁ ନୂଆକରି ଦେଖିବି । ମୁଁ ଏଡ଼େ ଦିଅରଟାଏ । କଲେଜରେ ପାଠ ପଢ଼ିଲିଣି । ତାଙ୍କୁ କିଛି ଉପହାର ଦେବିନାହିଁ ? ଅବଶ୍ୟ ଦିଅର ସାନ, ନୂଆବୋଉ ବଡ଼ । ସାନ ବଡ଼କୁ ମୁହଁଚାହାଁ ଦିଏନାହିଁ । କିନ୍ତୁ ମୁଁ ନଦେବି ଗୋଟାଏ କେମିତି ? ମୁଁ ତ ନିହାତି କସି ଦିଅରଟିଏ ନୁହେଁ । ଦେବାର ବିଧି ନଥିଲେ ବି ନୂଆବୋଉ ମୋର– ମୋ ନୂଆବୋଉ– ପହିଲୁ ଦେଖାହେବ– ମୁଁ ତାଙ୍କୁ ଗୋଟାଏ ଉପହାର ନଦେବି କେମିତି ? ଉପହାର ନୁହେଁ ଯେ– ମୋର ଶ୍ରଦ୍ଧା, ଭକ୍ତିର ଗୋଟାଏ ଚିହ୍ନ । ନାଇଁ–ନାଇଁ–ସେକଥା ହେବନାହିଁ । ମୁଁ ବଡ଼ ହୁଏ, ଛୋଟ ହୁଏ– ମୋ ନୂଆବୋଉକୁ ମୁଁ ଗୋଟାଏ ମୁହଁଚାହାଁ ଦେବି । ମୋତେ କିଏ କ'ଣ କହିବ ?

ଗାଡ଼ିଟା ରହିଲା । ସେଇଠି କ୍ରସିଂ । ମୁଁ ପୁଣି ବେଡ଼ିଂ ସୁଟ୍‌କେଶ୍ ଧରି ଓହ୍ଲେଇ ପଡ଼ିଲି, ଆର ଗାଡ଼ିରେ ଚଢ଼ିବାକୁ । ଗାର୍ଡ଼କୁ କହିଦେଲି ଆଗ ।

ଫେରିଲି । ବାଟଯାକ ଭାବୁଥାଏଁ– କ'ଣ କିଣିବି ? ପଇସା ଥାଏ ଅତି କମ୍ । ସେଇ କମ୍ ଭିତରେ ଗୋଟିଏ ସୁନ୍ଦର ପସନ୍ଦ ହେଲା ଭଳିଆ ଜିନିଷ କିଣିବାକୁ ପଡ଼ିବ । କ'ଣ କିଣିବି ? କିଛି ଠିକ୍ କରିହେଲାନାହିଁ । କିଣିଲାବେଳେ ଦେଖାଯିବ ବୋଲି ଠିକ୍ କଲି ।

ଷ୍ଟେସନ୍‌ରେ ପହଞ୍ଚି ଦେଖିଲି, ସେଇ ଗାଡ଼ିରେ ଆସିଛି ଭିକାରି । ସେ ସେଠି ଓହ୍ଲାଇଲା । ଭାଇ ତାକୁ ପଠେଇଛନ୍ତି ମୋତେ ଦେଖିବାପାଇଁ । ତାଙ୍କର ସନ୍ଦେହ ହେଲା, ମୋ ଦେହ କାଳେ କିଛି ହେଇଥିବ ।

ବିନୋଦ ମୋତେ ଦେଖି ଆଶ୍ଚର୍ଯ୍ୟ ହେଲା । ମୁଁ କହିଲି– ଘରକୁ ଯାଇ ମୁଁ ଫେରିଲିଣି । ପୁଣି ଯିବି । ସେ ହସିଲା ।

ଭିକାରି ଆଉ ବିନୋଦକୁ ସାଙ୍ଗରେ ନେଇ ବଜାରକୁ ଗଲି । କେତେ ଜିନିଷ– ରାଇଟିଂ କେସ୍, ଭେନିଟି ବକ୍‌ସ, ସିଉଇଙ୍ଗ ସେଟ୍–ସବୁ ମନହେଲା କିଣିବାପାଇଁ । କିନ୍ତୁ କେଉଁଥିକି ପଇସା ହେଲାନାହିଁ । ବିନୋଦ ପାଖରେ ନଥିଲା । ଭାଇ ବି ପଠାଇ ନଥିଲେ । ଭିକାରି କହିଲା– ଗଲେ ଆଣିବେ । ତା'ମାନେ ମୁଁ ବୁଝିଲି, ମୁଁ ରାଗିଛି ବୋଲି ଭାଇ ବୁଝିଛନ୍ତି– ଭିକାରିକି ପଠେଇଛନ୍ତି ମୋତେ ନେଇଯିବାପାଇଁ । ମୋର ଭାରି ରାଗ ହେଲା । ଇଚ୍ଛାହେଲା, ଭିକାରିକି ଫେରେଇଦେବି; କିନ୍ତୁ କଥାଟା ଅତି ହେଇଯିବ । ସେଥିପାଇଁ କିଛି କହିପାରିଲିନାହିଁ ।

ଭିକାରି କହିଲା– ବିଭୂତିବାବୁ, ଗୋଟିଏ ଚିଜ କହିବି, ନେବ ?

–କ'ଣ ? –ମୁଁ ତାକୁ ଚାହିଁଲି ।

–ତମର ପସନ୍ଦ ହେବ ନହେବ । ଭିକାରି ସଂକୋଚ କରି କହିଲା ।

–ଜିନିସଟା କ'ଣ ଶୁଣିଲେ ତ ! –ମୁଁ କହିଲି ।

–ଏଇ ହାତୀଦାନ୍ତର ସିନ୍ଦୂର ଫରୁଆଟି ନିଅ ।

–ଆଉ ?

—ଆଉ କିଛି ଦରକାର ନାହିଁ ।

ବିନୋଦ କହିଲା— ହଁ, ଖୁବ୍ ଭଲହେବ ।

ଦୋକାନୀ ବି ସେ ଦୁହିଁଙ୍କ ପକ୍ଷ ନେଲା । ମୁଁ ମାନିଲି । କିଣିଲି ହାତୀଦାନ୍ତ କି ହାତୀ ହାଡ଼ରେ ହେବ, ଗୋଟିଏ ସିନ୍ଦୂର ଫରୁଆ । ବାଛି ବାଛି ଖୁବ୍ ସୁନ୍ଦର ଫରୁଆଟିଏ ଆଣିଲି । ସେଇଦିନ ରାତିରେ ଘରକୁ ଗଲି । ମନରେ ଗୋଟାଏ ଅଜଣା ନୁହେଁ ଅନାଗତ ଆଶାର ଏହି ଦାନଟାକୁ ମନ ଯେମିତି ସ୍ୱୀକାର କରିବାକୁ ଚାହୁଁନଥାଏ । ମୁଁ ଭାବୁଥାଏଁ— ନୂଆବୋଉକୁ ଦେଖିବି— ଏଇ ସୁନ୍ଦର ସିନ୍ଦୂର ଫରୁଆଟିକୁ ତାଙ୍କୁ ଦେବି— ସେ କେଡ଼େ ଖୁସି ହେବେ; କିନ୍ତୁ ଏଥିପାଇଁ ଯେ ଚଳନ୍ତି ରେଳଗାଡ଼ିର ତାଳେ ତାଳେ ମୋ ଦେହ ମନ ସବୁ ନାଚୁଛନ୍ତି, ସେକଥା ମୁଁ ବୁଝିପାରୁନଥିଲି ।

ତହିଁ ଆରଦିନ ସକାଳ ୯ଟା ବାଜିଲା, ଭାଉଜ ଦିଅରଙ୍କ ସାକ୍ଷାତ୍ ହେଲାନାହିଁ । ନୂଆବୋଉ ବି ଡାକିପଠେଇଲେନାହିଁ । ମୁଁ କେମିତି ଯିବି— କାହିଁକି ଯିବି— କିଛି ଠିକ୍ କରିପାରୁନଥିଲି । ଗୋଟିଏ ଖିଅ ଖୋଜି ବୁଲୁଥାଏଁ— ସେଇଟା ମିଳୁନଥାଏ । ମନ ଚଞ୍ଚଳ ହେଇ ଉଠୁଥାଏ ନୂଆବୋଉଙ୍କୁ ଦେଖିବା ଲାଗି; କିନ୍ତୁ ଗୋଡ଼ ଚଳୁନଥାଏ ।

—ବାବୁ !

ମୁଁ ଅନେଇଦେଲି—ଭୀମା ଚାକର !

—କ'ଣ ରେ ! —ମୁଁ ପଚାରିଲି ଆଗ୍ରହରେ ।

—ନୂଆବୋଉ ଡାକୁଚନ୍ତି ।

ମୁଁ ସନ୍ତପନ୍ତ ହେଲି । ଏଥର ତ ନୂଆବୋଉ ଡାକିପଠେଇଲେ; କିନ୍ତୁ ଗୋଡ଼ ତ ତେବେ ବି ବୋଲ ମାନୁନାହିଁ । ମୁଁ କହିଲି— ଯାଉଛି— ଚାଲ୍ ।

—ନାଇଁ, ସେ କହିଛନ୍ତି ସାଙ୍ଗରେ ନେଇଯିବାକୁ ।

—ଆରେ ମୁଁ କ'ଣ ଛୁଆ ନା ପିଲା ଯେ ଏକୁଟିଆ ଯାଇପାରୁନାହିଁ ! ମୁଁ ଉଠି ଆସ୍ତେ ଆସ୍ତେ ଚାଲିଲି ନୂଆବୋଉଙ୍କ ଘର ଆଡ଼କୁ । ଆଉ ସେଇମିତି ନୂଆବୋଉ ଶୁଣିପାରିବା ଭଳି ପାଟିକରି କହି କହି ଯାଉଥାଏଁ— ହୋଃ— ନୂଆବୋଉଙ୍କୁ ଦେଖି ମୁଁ ଡରିଯିବି ନା କ'ଣରେ ? କାହାନ୍ତି ନୂଆବୋଉ, କୋଉଠି ଅଛନ୍ତି ଭୀମା ? କହି ମୁଁ ସେ ଘର ଭିତରକୁ ପଶିଗଲି ।

ସେଠି ଦେଈ ଥିଲା । ନୂଆବୋଉ ନଥିଲେ । ମୁଁ ପଚାରିଲି— ଦେଈ, ନୂଆ ନୂଆବୋଉ କୁଆଡ଼େ ଗଲେ କିଲୋ ?

ତୁଣ୍ଡରୁ କଥା ସରିନଥାଏ, ଗୋଟିଏ ନାରୀମୂର୍ତ୍ତି ସେଇ ଘର ଭିତରେ ପ୍ରବେଶ କଲା । ଆଖିର ସୌନ୍ଦର୍ଯ୍ୟକୁ ଆଡ଼ ଓଢ଼ଣା ଢାଙ୍କିଦେଇଥିଲା । ତଳକୁ ମୁହଁ ପୋତିଥିଲେ ବି ଓଠର ହସ ଲୁଚିପାରୁନଥିଲା । ମୂର୍ତ୍ତିଟି ଧୀରେ ଧୀରେ ମୋ ପାଖକୁ ଆସିଲା । ହାତରେ ଗୋଟିଏ ଗିନା, ସେଥିରେ ଥିଲା ଗୁଡ଼ ।

ମୁଁ ବୁଝିପାରିଲିନାହିଁ । ଆଶ୍ଚର୍ଯ୍ୟ ହୋଇଗଲି– ୟାର ମାନେ ! ନୂଆବୋଉ ଡାହାଣ ହାତରେ ମେଞ୍ଚେଖଣ୍ଡେ ଗୁଡ଼ ଧରି ମୋ ମୁହଁ ଆଡ଼କୁ ସେଟା ଧୀରେ ଧୀରେ ବଢ଼େଇବାକୁ ଲାଗିଲେ । ଏ କି କାଣ୍ଡ ? ମୁଁ ଅବାକ୍ ହେଇଗଲି । ଏଣେ ଗୁଡ଼, ତେଣେ ନୂଆବୋଉ । ମୁଁ ଦଣ୍ଡବତ ବି କରିପାରିଲିନାହିଁ ।

ଦେଇ କହିଲା– ଗୁଡ଼ ଟିକିଏ ଖା– ଖାଆନ୍ତି ପରା ।

କିନ୍ତ ଗୁଡ଼ ତ ଟିକିଏ ନଥିଲା ! ବାଁ ହାତର ଭଙ୍ଗୀ, ଆଉ ଡାହାଣ ହାତର ଉତ୍ସୁକତାରୁ ଯାହା ବୁଝାପଡୁଥିଲା, ସେଇ ଆଶଙ୍କାରେ କହିଲି– ତାଟିଆକ ଯାକ ?

ଏତକ ମୁଁ ସବୁ କହିସାରିଛି କି ନାହିଁ, ନୂଆବୋଉ ଗୁଡ଼ ହାତଟାକୁ ନେଇ ମୋ ମୁହଁ ଭିତରେ ପୂରେଇଦେଲେ । ଗୁଡ଼ ଖାଇବାକୁ ହେବ କି ନୂଆବୋଉଙ୍କ ହାତଟା ଖାଇବାକୁ ହେବ, ତା ଠିକ୍ କରିବା କଠିନ ହୋଇପଡ଼ିଲା । ତା'ପରେ ସେ ହାତଟା ଆପେ ଆପେ ଗୁଡ଼ତକ ନିର୍ଦ୍ୱନ୍ଦ୍ୱରେ ମୋ ଜିଭରେ ଲଗାଇ ଯେତେବେଳେ ବାହାରିଆସିଲା, ସେତେବେଳେ ବୋଧହୁଏ ଓଠଯାକ ବୋଳିହେବାରେ ସନ୍ତୁଷ୍ଟ ନହୋଇ ସେ ଗୁଡ଼ରୁ ମେଞ୍ଚେ ଛେପ ମିଶାକି ଗାଲ ଉପରେ ଲାଗିଯିବାକୁ ଛାଡ଼ିଲାନାହିଁ । ଏଟା ଗୁଡ଼ର ଦୋଷ କି ହାତର ଦୋଷ ତା' ନୂଆବୋଉ ଜାଣିଥିବେ ।

ଦେଇ କହିଲା– ଯାଃ– ଛୁଆଟା ସାଙ୍ଗରେ ଗୋଟାଏ ଥଟ୍ଟା ।

ଓ–ଏଟା ଥଟ୍ଟା ପରା ? ମୁଁ ହସି ହସି କହିଲି– ତାହେଲେ ଆଉ ଟିକିଏ ନୂଆବୋଉ ଆଉ ଟିକିଏ– ଏ ଗାଲଟା ରହିଗଲା ଯେ ।

ନୂଆବୋଉଙ୍କ ମୁହଁର ହସଟା ଆଉ ଟିକିଏ ଫୁଟିପଡ଼ିଲା । ସେଥିପାଇଁ ମୋ ପାଟିରୁ ଗୁଡ଼ ସରିଗଲା ସଙ୍ଗେ ସଙ୍ଗେ ସେ ହସଟାର ମିଠା ବି କମିଗଲା ପରି ମନେହେଲା । ସେ ହାତଧୋଇ ଆଉ ଗୋଟେ ଗିଲାସରେ ପାଣି ଆଣି ଦେଲେ । ମୁଁ ବି ହାତ ଧୋଇଲି – ମୁହଁ ଧୋଇଲି । ନୂଆବୋଉ ଯାଇ ଅପା ପାଖରେ ବସିଲେ– ତଳେ । ମୁଁ ଖଟ ଉପରେ ବସିଲି । ନୂଆବୋଉ ଲାଜଜଡ଼ିତ ନବବଧୂଟି ପରି ଓଢ଼ଣା ଉଢ଼ାଳରେ ଢଳ ଢଳ ଦିଶୁଥିଲେ । ଗୋଟାଏ ଆନନ୍ଦର ଫୁଲାଣିରେ ମୁହଁଟା ଭରିଉଠିଥିଲା ।

ମୁଁ ଚାହିଁ ଦେଖିଲି, ମୋ କଳ୍ପନାର ନୂଆବୋଉଠୁଁ ଏ ଢେର୍ ଭଲ, ଢେର୍ ବେଶି ସୁନ୍ଦର ! ମନଟା ମୋର ପାଇବାର ଗୌରବରେ ଫୁଲିପଡ଼ିଲା ।

ନୂଆବୋଉ କିନ୍ତୁ କିଛି କଥା କହିଲେନାହିଁ ।

ଦେଇ କହିଲା– ତମ ସାନ ଭଉଣୀଟିକି ଆମ ବିଭୂପାଇଁ କରିବା ।

କିଏ ? ୟାଙ୍କ ଭଉଣୀ ? କିଏ ବାହାହବ– ମୁଁ ? କହିପଠା, ଶିବଙ୍କୁ ପାଇବାପାଇଁ ପାର୍ବତୀ ଯେମିତି ତପସ୍ୟା କରିଥିଲେ, ସେମିତି କରୁ । ତା' ନହେଲେ ଏ ଦେବତା...

–ଇସ, ତୁଟା ଭାରି ସୁନ୍ଦର ନା ! –ଦେଇ କହିଲା ।

–ମୁଁ ସୁନ୍ଦରନୁହେଁ ? ଆଚ୍ଛା, ନୂଆବୋଉଙ୍କୁ ପଚାରିବା । ସେ ତ ନିରପେକ୍ଷ ଲୋକ– ସେ କାହାରିଆଡ଼ିଆ ନହେଇ କହନ୍ତୁ ମୁଁ ସୁନ୍ଦର କି ଅସୁନ୍ଦର !

ନୂଆବୋଉ ହସିଲେ । ସେ ହସଟାର ମାନେ ମୁଁ ବୁଝିଲି 'ହଁ' ! କହିଲି, –ଦେଖିଲୁ ଦେଇ– ନୂଆବୋଉ କ'ଣ କହିଲେ ?

– କ'ଣ କହିଲେ ନୂଆବୋଉ ?

– କହିଲେ– ମୁଁ ସୁନ୍ଦର ।

– ହଁ ତୁ ସୁନ୍ଦର, ତୋ ଆଖି ସୁନ୍ଦର–ଆଉରି ସୁନ୍ଦର– ସବୁଠୁଁ ସୁନ୍ଦର ତୋର ପାଛିଆକ ଦାନ୍ତ । ଦେଖ, ଦେଖ ନୂଆବୋଉ, ଆମ ବିଭୂତିର ଦାନ୍ତ ଧାଡ଼ିକୁ ଟିକିଏ ଚାହିଁବଟି ! ଆହା ହା– ସତେ କି ସୁନ୍ଦର–ମରିଯାଉଥାଏଁ ମୁଁ !

ସେତେବେଳକୁ ନୂଆବୋଉ କିନ୍ତୁ ବେଶ୍ ବାଗରେ କଡ଼େଇକିନି ମୋ ମୁହଁଟାକୁ ଭଲ ଭାବରେ ଚାହିଁଦେଇ, ତାପରେ ଦେଇ ମୁହଁକୁ ଅନାଇ କଥା ଶୁଣିବାର ବାହନା କରୁଥାନ୍ତି । ମୁଁ ନିଜର ଦୋଷଟା ପ୍ରତି ବଡ଼ ସଜାଗ ରହି, ଲାଜରେ ବୁଡ଼ିଗଲିଣି ସେତେବେଳକୁ । କିନ୍ତୁ ମରଦ ପିଲା, ମୁହଁଭୁରୁଡ଼ିଟା ଛାଡୁନଥାଏଁ । କହିଲି– ଦାନ୍ତ ବଡ଼ ହେଲେ ପାଠୁଆ ହୁଅନ୍ତି, ଜାଣ ?

ଦେଇ କହିଲା– ଆହା ହା, ସାକ୍ଷାତ୍ ଗଣେଶ ବିଜେ କଲେ କି ଆଉ !

–ନୂଆବୋଉ, ଗୋଟେ ଜିନିଷ !

–କ'ଣ ?

ତାଙ୍କ ମୁହଁରେ ଆନନ୍ଦ ଥିଲା, ଉତ୍ସୁକତା ଥିଲା, ଆଉ ଶରଧାର ପ୍ରତିଦାନରେ ଯେଉଁ ସ୍ନେହଜାତ କୃତଜ୍ଞତା ରୂପଧରି ଖେଳେ, ସେଇୟା ।

–ମୋ ହାତରେ କ'ଣ ଅଛି କହିଲ ? ଦୁଇ ହାତକୁ ବେଶ୍ ଯାବୁଡ଼ିଧରି ପଚାରିଲି । ନୂଆବୋଉ ବୋକାଙ୍କ ଭଳି ଚାହିଁରହିଲେ ।

–କହିପାରିବନାହିଁ– କହିପାରିବନାହିଁ ? ମୁଁ ହାତ ଖୋଲି ଦେଖାଇ ଦେଲି । ସେ ଚୁଟ୍‌କିନା ମୋ ହାତରୁ ଫରୁଆଟା ଉଠାଇନେଇ ଦେଖିଲେ, ଖୋଲିଲେ ।

–ଇଏ କା'ର ? ଆଜିଠୁ ଆଣି ରଖିଲଣି ନା ବହୂଟି ପାଇଁ ? ସେ ଥଟ୍ଟାକରି ପଚାରିଲେ ।

ମୁଁ କହିଲି–ନାଁ–ଇଏ ତମର ।

ମୁହଁଚହାଁ ?– ସେ ପଚାରିଲେ ।

ମୁଁ କିଛି କହିଲିନାହିଁ । ସେ ବୋଧେ ମୋ ମନର ଭାଷାଟା ବୁଝିପାରିଲେ । ଫରୁଆଟିକୁ ନେଇ ଖୁବ୍ ଯତ୍ନରେ ତାଙ୍କ କୋଥଳିରେ ପେଡ଼ି ଭିତରେ ରଖିଲେ । ମୁଁ ଯେମିତି ମୋ ଦାନର ପ୍ରତିଦାନ ପାଇଲି ।

X X X X

କଣ ଗୋଟାଏ ଛୁଟି ଥାଏ । ତିନି ଚାରିଦିନପାଇଁ କଲେଜ ବନ୍ଦ ହେଲା । ମୋତେ ଅଡୁଆଟା ଲାଗିଲା । ଘରକୁ ଚାଲିଆସିଲି । ଆସିବାର ହୁଏତ କିଛ କାରଣ ନଥିଲା । ଯେତେବେଳେ ଷ୍ଟେସନ୍‌ରେ ଆସି ପହଞ୍ଚିଲି, ସେତେବେଳେ ମୋର ମନେପଡ଼ିଲା– ମୁଁ

ଘରକୁ କାହିଁକି ଯିବି ? ଭାଇ ପଚାରିଲେ କ'ଣ କହିବି ? ଛୁଟି ଅଛି ବୋଲି ତ ! କିନ୍ତୁ ଦୁଇ ତିନିଦିନପାଇଁ ବୃଥା ଖରଚ କରି ଆସିବାର ଏମିତି କି ଜରୋରୀ ଦରକାର ଥିଲା ? ଏ ପ୍ରଶ୍ନର କି ଉତ୍ତର ଦେବି ? ଭାବିଲି ଫେରିଯିବି । ଫେରିଗଲେ ପିଲାଏ ହସିବେ । ଟିକିଟ୍ କାଟିପକାଇଥିଲି ।

ଘରେ ପହଞ୍ଚିଲା ବେଳକୁ ବାପା ଦାଣ୍ଡରେ ବସିଛନ୍ତି ।

— କିରେ, ଛୁଟି ଅଛି କି ? ସେ ପଚାରିଲେ ।

ଭୂମିଷ୍ଠ ଦଣ୍ଡବତଟିଏ ହୋଇ ମୁହଁକୁ ଓଳିଆପରି କରି କହିଲି— ହଁ ।

ପର ପ୍ରଶ୍ନଟାର ଅପେକ୍ଷାରେ ଛାତି ଥରୁଥାଏ । ଭାଗ୍ୟେ ସେ ଆଉ କିଛି ପଚାରିଲେ ନାହିଁ । ସେଠୁ ରକ୍ଷାପାଇ ଘର ଭିତରକୁ ଗଲି । ଶୁଣିଲି ଭାଇ ନାହାନ୍ତି । ମନଟା କୁଣ୍ଢେ ମୋଟ ହୋଇଗଲା । ଜୋତା ହଳକୁ ଗୋଡ଼ରୁ ଖୋଲି ଫୋପାଡ଼ିଦେଇ ଆଗ ଛୁଟିଲି ନୂଆବୋଉଙ୍କ ପାଖକୁ । ନୂଆ ଜିନିଷକୁ ଆଦର କରିବାରେ ମଣିଷର ଅସୀମ ପ୍ରବୃତ୍ତିଟା ମୋତେ ଚଞ୍ଚଳ କରିପକାଉଥିଲା । ମୁଁ ଘର ଭିତରକୁ ପଶିଗଲି । ଯା'ରି ଭିତରେ ମୋ ଆସିବା୍ କଥା ଶୁଣି ମୋତେ ଦେଖିବେ ବୋଲି ନୂଆବୋଉ ଆସି ଅଧବାଟରେ ହେଲେଣି । ମୁଁ ତାଙ୍କୁ ଚାହିଁଦେଇ ଲହସି ପଡ଼ିଲି । ଦଣ୍ଡବତ କଲି । କିନ୍ତୁ ମନହେଉଥିଲା ଲମ୍ୱଖାମ୍ୱକି ସେ ପ୍ରାଣମୟ ପାଦତଳେ ପଡ଼ି ରହିବି କି ଆଉ !

ବୁଢ଼ାଟିଏ ହେଇଥାଅ— କହି ନୂଆବୋଉ ଉଠାଇଦେଲେ । ସେ ପଚାରିଲେ— କେତେବେଳେ ବାହାରିଲ ?

ଜମା ତିନିଘଣ୍ଟାର ରାସ୍ତା ନୂଆବୋଉ— ମୁଁ କହିଲି ।

''ଆସ' ବୋଲି କହି ସେ ଘରକୁ ଡାକିଲେ । ଗୋଡ଼ ଧୋଇବାକୁ ପିଣ୍ଡାରେ ପାଣି ଥିଲା । ଗୋଡ଼ଧୋଇ ଘରକୁ ଗଲି । ନୂଆବୋଉ ମତେ ଥଟ୍ଟା କଲେ— 'ସତ୍ୟବାନ୍ ତ ଆସିଲେ, ସାବିତ୍ରୀ କାହାନ୍ତି ?''

ମୋତେ ଏତେ ଲାଜମାଡ଼ିଲା ଯେ ମୁଁ ଆଉ କିଛି କହିପାରିଲିନାହିଁ । ଥଟ୍ଟା କିମିତି କରନ୍ତି ମୋତେ ଯେମିତି ଜଣାନଥିଲା । ନୂଆବୋଉଙ୍କୁ ଯେ ଥଟ୍ଟା କରିବାକୁ ହୁଏ, ଏ କଥା ଯେମିତି ମୁଁ ଭୁଲିଯାଇଥିଲି ।

ନୂଆବୋଉ ଆସନ ଆଣିଦେଲେ । ମୁଁ ବସିଲି । କହିଲେ— ଭୋକ ଲାଗିବଣି— ଟିକିଏ କିଛି ଆଣେ ।

ସେଦିନର ନୂଆବୋଉ ଆଉ ଆଜିର ନୂଆବୋଉ ଭିତରେ ଏଡ଼େବଡ଼ ବ୍ୟବଧାନଟା ମୋ ଆଖିଆଗରେ ଧରାନପଡ଼ି ରହିପାରିଲାନାହିଁ । ନୂଆବୋଉ ଏହାରି ଭିତରେ ଜଣେ ଘରଣୀ ପାଲଟିଗଲେଣି— ପକ୍କା ଘରଣୀ । ମୋର ମନେହେଲା ପରକୁ ଏତେ ଚଞ୍ଚଳ ଆପଣାର କରିପାରିବା, ଅଚିହ୍ନାକୁ ଏତେ ସହଜରେ ଚିହ୍ନା କରିପାରିବା ବୋଧହୁଏ କେବଳ ଏ ସ୍ତ୍ରୀଜାତିଟାର ବିଶେଷତ୍ୱ । ନୂଆବୋଉ ଏ ଘରର ଗୋଟେ ଖୁବ୍ ପୁରୁଖା ପୁରୁଣା ଲୋକ ପରି ମନେହେଲେ । ମାସ କେଇଟା ଭିତରେ ଏତେ ପରିବର୍ତ୍ତନ ! ମୁଁ ଆଶ୍ଚର୍ଯ୍ୟହେଲି ।

ନୂଆବୋଉ ଜଳଖିଆ ଆଣିଲେ । ମୁଁ ଖାଇବସିଲି । ସେ ବି ପିଢ଼ାଟାଏ ଟାଣିଆଣି ମୋ ପାଖରେ ବସିଲେ ।

ଏତେ ଚିନି ଦେଇଛ ? ମୁଁ– କହିଲି ।

ବେଶି ମିଠା ହେଇଯାଇଛି ?–ସେ ବ୍ୟସ୍ତହେଲେ ।

ନାଇଁ, ଅତି ବେଶି ନୁହେଁ, ତେବେ–

ତାହାହେଲେ ଟିକିଏ ଖଟା କି ଆଚାର ଦିଏଁ ?

ଦିଅ ।

ସେ ଉଠିଯାଉଥିଲେ ଆଚାର ଆଣିବାକୁ । ତାଙ୍କୁ ଏଇ କ୍ଷଣକପାଇଁ ବି ଛାଡ଼ିଦେବାକୁ ମୋର କାହିଁକି ମନବଳିଲାନାହିଁ । ସେ କଷ୍ଟକରି ଯିବେ, ଆଣିବେ । ମୁଁ କହିଲି– ନାହିଁ, ନାହିଁ, ଥାଉ !

କାହିଁକି ମ ?– ସେ ପଚାରିଲେ ।

ତମେ ବସ !

ମୁଁ ଚାହିଁ ଦେଖିଲି, ତାଙ୍କ ମୁହଁରେ ଆନନ୍ଦ ଥିଲା ନିଶ୍ଚୟ । କିନ୍ତୁ ତାଛଡ଼ା ମୋ ଭିତର ପୃଷ୍ଠାଗୁଡ଼ାକରେ ଲେଖାହେଇଥିବା ଅତି ଅପଢ଼ା ଅକ୍ଷରଯାକ ପଢ଼ିପାରିବାର ପରିତୃପ୍ତିରେ ତାଙ୍କ ମୁଖମଣ୍ଡଳ ଝଲସି ଉଠୁଥିଲା । ମୁଁ ତାଙ୍କ ଆଗରେ ଶଙ୍କିଗଲି । ମୋତେ ଟିକିଏ ଲାଜଲାଗିଲା । ମୁଁ କହିଲି– ତମେ ବସ, ନନାକୁ କହ– ଆଣିଦଉ ।

ସେ ପୂଝାରୀକୁ ବରାଦ୍ କଲେ । ପୂଝାରୀ ଯାଇ ତେନ୍ତୁଳି ମେଞ୍ଚାଏ ନେଇଆସିଲା । – ହେଇଟି, କହୁଥିଲି ପରା ! ଯାଙ୍କ ଦେଇ କ'ଣ ଶାଗ ସିଝିବ ? ନୂଆବୋଉ କହିଲେ ।

ସେ ତ ଭାତ ଡାଲି ତରକାରି ସିଝାଉଛି ଶାଗଟା ନୋହିଲେ ! ମୁଁ କହିଲି । ନୂଆବୋଉ ହସିଲେ । ସେ ଉଠିଯାଉଥିଲେ ନିଜେ ଆଚାର ଆଣିବାପାଇଁ ।

– କେଉଁଠି ଅଛି ତାକୁ କହିଦେଲେ ସେ କ'ଣ ଆଣନ୍ତାନାହିଁ ? – ମୁଁ ପୁଣି କହିଲି ।

ଆରଘର କଣ ଶିକାରେ ଉପରୁ ଦି'ଟା ଆଟିକା ଛାଡ଼ି ବେହେଡ଼ି ଦିହରେ ଲେମ୍ବୁ ଆଚାର ଅଛି । ଆମ୍ବ ଆଣିବ ନା ଲେମ୍ବୁ ?

ଲେମ୍ବୁ–

ସେଇଥିରେ ଅଛି – ଯା, ଟିକିଏ ବେ'ଗି କରି ।

ପୂଝାରୀ ଡେରିକଲା ଆଣିବାରେ । ନୂଆବୋଉ ନିଜେ ଉଠିଗଲେ । ତାଙ୍କ କଥାରେ କାର୍ଯ୍ୟରେ ଚାଲିରେ ଚଳନରେ ତାଙ୍କ ଯୋଗ୍ୟତାର ନିଦର୍ଶନ ଭରିରହିଥିଲା ପରି ଲାଗୁଥାଏ । ତାଙ୍କ ଆଦର, ତାଙ୍କ ଯତ୍ନ ତାଙ୍କୁ ଯେ କ'ଣ କରି ମୋ ଆଗରେ ଠିଆକଲା, ମୁଁ ସେଟା କହିପାରିବିନାହିଁ ।

ଏ କେତେ ଦିନ– ଆମର ଖାଲି ଗପ ଚାଲିଲା– କି ସଞ୍ଜ, କି ସକାଳ । ଜଳଖିଆ କରି ବସିଯାଉ ଗପରେ । ଗପ ସରେ, ପୂଝାରୀ ଆସି ଭାତ ଖାଇବାକୁ ଡାକିଲେ । ସେ ଗପ କରନ୍ତି– ତାଙ୍କ ଘର, ଗାଁ, ଚାକରବାକର, ଭାଇ, ବାପା, ଦାସୀ ପରିବାରୀ,

ଗୋରୁଗାଈ, ଗଛବୁରୁଛ ନେଇ। ମୁଁ କହେ— ଆମ କଲେଜ ହଷ୍ଟେଲ, ସାଙ୍ଗ ସାଥୀ, ମାଷ୍ଟର, ବହି, ଥିଏଟର, ସିନେମା, ସଭାସମିତି ସମ୍ବନ୍ଧରେ। ଦିନ ଦୁଇଟା ଚାହୁଁ ଚାହୁଁ ଗଡ଼ିଗଲା— ପାଣି ପରି ବହିଗଲା। ଗପ ଆମର ଖଣ୍ଡିଆ ହୋଇ ରହିଲା, ଯେମିତି ନୂଆବୋଉଙ୍କର ଏଇ ଦିନରେ ସବୁ ଘରକାମ ଦରଖଣ୍ଡିଆ ହୋଇ ପଡ଼ିଲା ପରି।

ମୁଁ ପୁଣି ବାହାରିଲି ପଢ଼ିବାକୁ। ଘରେ ଯେମିତି କ'ଣ ଛାଡ଼ିଆସିଛି। ମନେକଲେ ମନେପଡ଼େନାହିଁ— ପଛକୁ ଚାହିଁଲେ ଦିଶେନାହିଁ।

X X X X

ମୁଁ ନୂଆବୋଉଙ୍କ ପାଖକୁ ଚିଠି ଦିଏଁ। ସେ ଉତ୍ତର ଦିଅନ୍ତି। ପୁଣି ସେ ଚିଠି ଦେଲେ ମୁଁ ଉତ୍ତର ଦିଏଁ। ଘର ପାଖରେ ଯେ ଗୋଟାଏ ଫାଙ୍କିଦିଆ ଆକର୍ଷଣ ଛାଡ଼ି ଗହୀରିଆ ମୋହ ଥାଇପାରେ, ସେକଥା ମୁଁ ଅନୁଭବ କଲି, ଯେଉଁଦିନଠାରୁ ନୂଆବୋଉ ଶରଧା ଭଳିଆ ଏଡ଼େ ସୁନ୍ଦର ଗୋଟାଏ ଦରବକୁ ଘରେ ରଖି, ମୁଁ ମାସ ମାସ ବାହାରେ କଟାଇବାକୁ ଶିଖିଲି।

ପ୍ରତି ଛୁଟିରେ ଘରକୁ ଯିବା ଆଗରୁ ନୂଆବୋଉଙ୍କର କିଛି ନା କିଛି ବରାଦ୍ ଆସିଯାଏ। ଏଣିକି କୌଣସି ଛୁଟିରେ, ପଢ଼ାବାହାନାରେ ହେଉ ବା ଯେତେ ବଡ଼ କାମ ଥାଇ ହେଉ, ଘରକୁ ଯିବା ବାଦ୍ ପଡ଼େନାହିଁ।

ଥରେ ମୋତେ ନୂଆବୋଉ ଲେଖିଥିଲେ— ହଳେ ଦୁଲ୍ ଆଣିବାପାଇଁ। ମୁଁ ବହୁତ ବୁଲି ଅନେକ ଦୋକାନ ଖୋଜି ବାଛି ବାଛି ଦୁଲ୍ ହଳେ ଆଣିଲି। ଭାଇ ଯା ଆଗରୁ କଲିକତାରୁ ହଳେ ଦୁଲ୍ ଆଣିଥିଲେ ବୋଲି ମୋତେ ଜଣାନଥିଲା। ପୁଣି ସେଟା ଯେ ନୂଆବୋଉଙ୍କର ନାପସନ୍ଦ ହୋଇଛି ତା' ବା ମୁଁ ଜାଣିବି କେମିତି ? ମୁଁ ଯେମିତି ନେଇ ଦୁଲ୍ ହଳକ ଦେଇଛି ନୂଆବୋଉଙ୍କୁ, ସେ ଏକାବେଳକେ ଆପଣାଭୁଲାଙ୍କ ଭଳି ଉଚ୍ଛାଟ ହୋଇ ଭାଇଙ୍କ ପାଖକୁ ଦଉଡ଼ିଯାଇ ଦେଖାଇଦେଲେ— 'ହେଇଟି ଦେଖ, ବିଭୂତି କେମିତି ଦୁଲ୍ ଆଣିଛନ୍ତି !'

ଭାଇ ଟିକିଏ ହସିଲେ। କହିଲେ— 'ବେଶ୍ ହୋଇଛି।'

—ତମର ଯେଉଁ ପସନ୍ଦ ନା—ଛି—ସେ ଦୁଲ୍ ତମେ ଫେରାଇଦିଅ।

'ହଉ' ବୋଲି କହି ଭାଇ ନୀରବ ରହିଲେ। ଜହ୍ନ ରାତିର ଛାତି ଉପରେ ଚହଟି ଉଠିଲା ପରି ତାଙ୍କ ମୁହଁଟା ଗୋଟାଏ ଗୌରବରେ ଉଜ୍ଜ୍ୱଳ ଦିଶିଲା। ମୁଁ ଆଶ୍ଚର୍ଯ୍ୟ ହେଲି। ସେ ଭାଇ ନୁହେଁ, ଦେବତା !

ମୁଁ ଘରକୁ ଗଲେ ଭାଇଙ୍କର ସେବାରେ, ଭାଇଙ୍କର ଯତ୍ନ ନେବାରେ ନୂଆବୋଉଙ୍କର ଟିକିଏ ତ୍ରୁଟି ହୁଏ ବୋଲି ମୋତେ କିମିତି ଜଣାଯାଏ। କିନ୍ତୁ ମଣିଷର ସ୍ୱାର୍ଥପ୍ରତି ସଜାଗ ବୃତ୍ତିଟା ଏଡ଼େ ପ୍ରବଳ ଯେ, ସେଟା ଅସୁନ୍ଦର ଦେଖାଗଲେ ବି ମୋତେ ବଡ଼ ଭଲଲାଗେ। ମୁଁ ଭାବେ— ନିଜକୁ ବୁଝାଏ— ମନକୁ ପ୍ରଶ୍ରୟ ଦିଏ— ନୂଆବୋଉଙ୍କଠାରେ ଭାଇଙ୍କର ଯେତେ ପ୍ରାପ୍ୟ ଥାଉ ପଛେ, ଦିଅରର ଏମିତି ଗୋଟାଏ ଅକଳନ୍ତି ଦାବି ଅଛି, ଯେଉଁଟାକି ସ୍ୱାମୀ ସ୍ତ୍ରୀର ଧରାବନ୍ଧା ନ୍ୟାଯ୍ୟ ପ୍ରାପ୍ୟ ସମ୍ବନ୍ଧର ବହୁତ ବାହାରେ। ଗୃହ ସମାଜର

ଆଇନକାନୁନକୁ ଲଙ୍ଘନ କରି ଅନେକ ଆଗକୁ– ଆଖି ନପାଇବାଯାଏଁ ଚାଲିଯାଇଛି, ତାକୁ କେହି ଅସ୍ୱୀକାର କରିପାରିବନାହିଁ । ତାକୁ ଏପାଖ ସେପାଖ କରି ଦେଖିଲେ ବୁଝି-ହୁଏନାହିଁ; କିନ୍ତୁ ସାଇତି ରଖିଲେ ସଞ୍ଚୟର ଆନନ୍ଦ ମିଳେ ।

X X X X

ସେ ଗୋଟାଏ ବଡ଼ ଦୁର୍ଦ୍ଦିନ । ରାତିରେ ଶୋଇଛି । କ'ଣ ଗୋଟାଏ ସ୍ୱପ୍ନ ଦେଖି ଚିହିଁକିପଡ଼ିଲି । କାନ୍ଦିଲି । ବିନୋଦର ନିଦ ଭାଙ୍ଗିଗଲା । ସେ ମୋତେ ଡାକିଦେଲା । ମୁଁ ଉଠି ଦେଖିଲି– ମୁଁ ଥରୁଛି । ଛାତିଟା ଦୁଲ୍‌କୁଛି । ଅନେକ ବେଳଯାଏ ଆଉ ନିଦ ହେଲା ନାହିଁ । ଭୋର୍ ଭୋର୍ ଟିକିଏ ବର୍ଷା ହେଲା । ଅଳପ ଶୀତଳ ସକାଳ ପବନର କୋମଳ ଆଉଁଶାରେ ଟିକିଏ ଆଖି ଲାଗିଆସିଲା ।

ଡେରିଯାଏ ଶୋଇପଡ଼ିଲି । ଖଣ୍ଡିଆ ମେଘ ଭିତର ଦେଇ ନସମା-ସୂର୍ଯ୍ୟକିରଣ ବାହାର ବାରଣ୍ଡା ଉପରକୁ ଛିଟିକି ପଡ଼ିଥାଏ– ଯେମିତି ଭାରି ବିକଳ ! କ'ଣ ଗୋଟାଏ କରୁଣ କଥା କହିବାପାଇଁ ସେ କିମିତିକା ଶୁଖିଲା ଆଗ୍ରହରେ ଚାହିଁବସିଛି ।

ଡେରିରେ ଉଠିଲି ବୋଲି ଦେହଟା ଅଳସେଇ ହେଉଥାଏ । ମନଟା ବି ବଡ଼ ସାକମା ଥାଏ । ମୁହଁ ଧୋଇଲି, ଦାନ୍ତ ଘଷିଲି, ପାଇଖାନା ଗଲି, ପଢ଼ିବସିଲି, ପଢ଼ିବାକୁ ମନ ବଳିଲାନାହିଁ । ଧୋବା ଲୁଗା ମାଗିଲା– ଲୁଗା ଦେଲି । ଭଣ୍ଡାରି ଆସିଲା, ପହରିଦିନ ଛ'ର ହେଇଥିଲେ ବି ପୁଣି ଥରେ ଛ'ର ହେଲି । ପଢ଼ିବାକୁ ପୁଣି ଚେଷ୍ଟା କରିବାକୁ ବସିଛି– ଶିବ ଆସି ଗପ ଆରମ୍ଭ କରିଦେଲା ।

ଘଣ୍ଟା ବାଜିଗଲା, ମୁଁ ଗାଧୋଇବାକୁ ଯାଇଥିଲି । ତେଣୁ ଫେରିବା ବେଳକୁ ଡାକବାଲା ମୋ ଦୁଆର ମୁହଁରେ ।

– ବାବୁ, ତାର ।

– କି ତାର ? ମୁଁ ଆଶ୍ଚର୍ଯ୍ୟ ହେଲି ।

– କା'ର ? ମୁଁ ପଚାରିଲି ।

– ଆପଣଙ୍କର ।

– ମୋର ? ମୁଁ ଡରିଗଲି ।

ଓଦାଲୁଗା ମୁଁ ପିନ୍ଧିଥାଏଁ । ତାରଟାକୁ ତା' ହାତରୁ ନେଇ ଠିକଣା ପଢ଼ିଲି । ହଁ, ମୋରି ! ଚିରିପକାଇଲି । ମୋ ହାତ ଥରିଲା । ମୁଁ ରୁମ୍‌କୁ ଚାଲିଗଲି । ସେଇ ଓଦାଲୁଗା, ସେମିତି ପିନ୍ଧିଥାଏ । ଖଟ ଉପରେ ବସିପଡ଼ିଲି ।

ବାବୁ ଦସ୍‌କତ୍ ! ତାରବାଲା ଡାକିଲା ।

ମୁଁ ଦସ୍‌କତ୍‌ଟାଏ ମାରିଲି । ସେ ଚାଲିଗଲା । ତା'ପରେ କେତେବେଳେ ଲୁଗା ପାଲଟିଛି ମୋତେ ଜଣାନାହିଁ । ପାଟି ଭିତରେ ସେଇ କଥାଟା ଖାଲି ଦୋହରେଇ ହେଉଥାଏ– ଭାଇ ସାଂଘାତିକ ବେରାମ୍– ଶୀଘ୍ର ଆସ । ଯେତେବେଳେ ମନେପଡ଼ିଯାଏ, ଛାତିଟା ଦାଉଁ ଦାଉଁ ଡେଇଁଉଠେ । ରାତିର ସପନଟା ମୋ ଦେହରୁ ରକ୍ତ ଟାଣି ନେଇଗଲାପରି ମନେହେଲା ।

ପୂଝାରୀ ଆସି ଡାକିଲା ଖାଇବାପାଇଁ । ମୁଁ ଖାଇବି କ'ଣ ? ବିନୋଦ ନଥିଲା । ମଧୁବାବୁ ନଥିଲେ– କେହି ନଥିଲେ । ମୁଁ କ'ଣ କରିବି ଭାବିପାରୁନଥିଲି । ବିଛଣାଖଣ୍ଡ ଯଥାକଥାକି ବାନ୍ଧିବୁନ୍ଧି ଦେଇ ଚାଲିଲି ଷ୍ଟେସନ୍‌କୁ । ମନେପଡ଼ିଲା ଆଉ ଦିନେ ଏମିତି ଚଞ୍ଚଳ ହେଉଥିଲି; ସେତେବେଳେ ଏଇମିତି ଷ୍ଟେସନ୍‌କୁ ବି ଯାଉଥିଲି । ସେ ଚଞ୍ଚଳତା ଆଉ ଏ ଚଞ୍ଚଳତା ଭିତରେ କେତେ ତଫାତ୍ ।

ତାରଟା କାଲି ଚାରିଟା ବେଳର, ମୁଁ ଆଜି ଏତେବେଳେ ପାଇଲି । ଏହା ଭିତରେ କେତେ କ'ଣ ଓଲଟପାଲଟ ହେଇଯିବାପାଇଁ ଯଥେଷ୍ଟ ସମୟ ଥିଲା । ଗାଡ଼ିଟା ଜୋର୍‌ରେ ଚାଲିଥାଏ । ମନେହେଉଥାଏ, ମୁଁ ଯେମିତି ଗାଡ଼ିଠାରୁ ଜୋର୍‌ରେ ଚାଲିଛି । ଆଉ ବୁକୁର ଦୁକୁଦୁକୁଟା ଯେମିତି ତା'ରି ଶବ୍ଦ ।

ଗାଡ଼ି ଆମ ଷ୍ଟେସନ୍‌ରେ ରହିଲା । ସବୁବେଳେ ମନ ଭିତରେ ଦକା-ଡର-ସନ୍ଦେହ । ଚାହୁଁଥାଏ, ଆମ ଗାଁଲୋକ କି ଚିହ୍ନାଜଣା କେହି ଦେଖାହୁଅନ୍ତେ ଯଦି– ପଚାରନ୍ତି ! କିନ୍ତୁ ଡର ହେଉଥାଏ – କାଳେ କିଛି ଅଶୁଭ କଥା ସେ କହିବେ !

ମନକୁ ଦମ୍ଭ କରେଁ, ବୁଝାଏଁ, ଭାଇ ଭଲ ଅଛନ୍ତି । କିନ୍ତୁ ମନ ବୁଝେନାହିଁ । ମନ ଯେମିତି ମୋର ଦୁର୍ବଳତାକୁ ଠଉରେଇ ମୋତେ ହସେ । ଯା'ର ନିଜର ଦମ୍ଭ ଧରିବାର ଶକ୍ତି ନାହିଁ, ସେ ପୁଣି ପରକୁ ଦମ୍ଭ ଦେବ କ'ଣ ? ମନ ମୋ ବୁଝା ମାନେନାହିଁ । ଦୁର୍ବଳ ଲୋକର କଥାରେ କେହି ମୂଲ୍ୟ ରଖେନାହିଁ । ମୁଁ ଯାହାକୁ ଦେଖିଲି, ଦୂରରୁ ଦେଖି ମୋର ଡର ହେଲା– କାଳେ ଏ ଆମ ଲୋକ ହେଇଥିବ– କାଳେ ଏ ମୋତେ ଚିହ୍ନିବ, କହିବ– ! ନା, ନା, ତା' ହେଇପାରେନା– ଭାଇ ମୋର ଭଲ ଅଛନ୍ତି, ନିଶ୍ଚୟ ଅଛନ୍ତି । ଗଛପତ୍ର, ଆକାଶ, ପବନ କାଳେ କେହି ମୋ କଥାର ପ୍ରତିବାଦ କରିବ, ସେଥିପାଇଁ ମୁଁ ଆଖି ବନ୍ଦକରିଦିଏଁ ।

ଘର ଆଉ ଖଣ୍ଡେଦୂର ଥାଏ । ବାଟଟା କାହିଁକି ମୋତେ ନିହାତି ଶୂନ୍‌ଶାନ୍ ଲାଗିଲା । ଏମିତି ତ କେବେ ଦେଖେଁନାହିଁ ! ମଣିଷ ଜଣେ ଅଧେ ଚାଲୁଥିଲେ । ତାଙ୍କ ଭିତରୁ କିନ୍ତୁ କେହି ମୋତେ ଚିହ୍ନନ୍ତିନାହିଁ କି ମୁଁ ତାଙ୍କ ଭିତରୁ କାହାରିକୁ ଚିହ୍ନେ ନାହିଁ । ଆଉ, ସମସ୍ତେ ଯିମିତି ଆଜି ଭାରି ଗମ୍ଭୀର ।

ସେ ପାଖରେ କୁକୁର ଯୋଡ଼ାଏ ତିନିଟା ଭୁକୁଥିଲେ– କାନ୍ଦିଲା ପରି ଗୋଟାଏ ରାହାରେ । କେତେଥର ଏ ଭୁକିବା ଶୁଣିଛି । କିନ୍ତୁ ଆଜି କାହିଁକି କେଜାଣି ସେ'ଟା ଶୁଣିବାବେଳକୁ ମୁଁ ଡରିଯାଉଥିଲି ।

ମୁଁ ଘରପର୍ଯ୍ୟନ୍ତ ଆସିଲି । କାହାର ଦେଖାପାଇଲିନାହିଁ ଦାଣ୍ଡରେ । ଘରଟା ଗୋଟାଏ ପ୍ରକାଣ୍ଡ ଶୋଇଲା ଅସୁର ଭଳିଆ ଦେଖାଯାଉଥିଲା । ଘର ଭିତରକୁ ଯିବା ପାଇଁ ମୋତେ ଯେମିତି କିଏ ମନାକରୁଛି । ଭାବିଲି, ଭାଇଙ୍କ ଦିହ ବେଶି ଖରାପ ଥିଲେ ନୂଆବୋଉ କ'ଣ କରୁଥିବେ !

ମୁଁ ଘର ଭିତରକୁ ପଶିଗଲି । ବାହାର ପରସ୍ତରେ କେହି ନାହାନ୍ତି– କାହାରିକି ଦେଖିଲିନାହିଁ । ମୁଁ ଇତସ୍ତତଃ ହେଲି । ଗୋଡଟା ବଡ଼ କଷ୍ଟରେ ଆଗକୁ ବଢ଼ାଇଲି ।

ଏତିକିବେଳେ ମଦନା ତେଣୁ ଆସିଲା । ମୋତେ ଯେମିତି ସେ ଦେଖିପକାଇଛି, ତା' ମୁହଁରୁ ବାହାରିପଡ଼ିଲା– ବାବୁ......

ବାସ୍, ସେତିକି । ଭୋ ଭୋ କରି ସେ କାନ୍ଦିଲା ।

ତାକୁ ଚାହିଁ ମୁଁ ବି କାନ୍ଦିବାକୁ ଲାଗିଲି ।

ବାପାଙ୍କ ପାଖକୁ ଗଲି । ବାପା ଗମ୍ଭୀର ପ୍ରଶାନ୍ତ । ନୀରବ ନିଷ୍ପନ୍ଦ । ମୁହଁରେ କଥା ନାହିଁ– ଖାଲି ଚୁପ୍‌ଚାପ୍ । ପୂର୍ଣ୍ଣାହୁତି ସାରି ପୁରୋହିତ ଯେମିତି ଜପକରି ବସିଛି ।

ନୂଆବୋଉ ? ନୂଆବୋଉଙ୍କ କଥା କହିହେବନାହିଁ– କହିପାରିବିନାହିଁ– ସେ କହିବାର ନୁହେଁ । ମୁଁ ଗଲାବେଳକୁ ସେ ତଳକୁ ମୁହଁପୋତି ଶୋଇଥାନ୍ତି– ତକିଆରେ ମୁହଁମାଡ଼ି । ମୁଁ ଯାଇ ପାଖରେ ବସିବାରୁ ସେ ଚାହିଁଦେଲେ । ମୋତେ ଯେମିତି ଦେଖିପକାଇଛନ୍ତି, 'ବିଭୂତି' ବୋଲି କହି ଗୋଟାଏ ଏମିତି କରୁଣ ଚିତ୍କାର କଲେ ଯେ, ସେ ତ୍ରସ୍ତ ଆର୍ତ୍ତନାଦରେ ଘରଟାର ଛାତି ଥରିଉଠିଲା ଯେମିତି !

–'ଆଉ ନାହିଁ ବିଭୂତି, ଆଉ ନାହିଁ କିଛି ।' ଭୋ ଭୋ କରି ସେ କାନ୍ଦିଲେ । ଯେମିତି ଛାତିଟା ଫାଟିଯାଉଥିଲା ତାଙ୍କର । ସେ କାନ୍ଦଣାରେ ବସୁଧା ବି ଫାଟିପଡ଼ିଥାନ୍ତା !

'ଭାଇ ଡାକ ଡମର ସରିଗଲା ବିଭୂତି ।'

ମୁଁ ଆଉ ସମ୍ଭାଳିପାରିଲିନାହିଁ । ତାଙ୍କରି ସାଙ୍ଗରେ ମୁଁ ବି କାନ୍ଦିଉଠିଲି ।

''ଯେତେ ମନା କଲି ମାନିଲେ ନାହିଁ । ନେଇଗଲେ– ଏ କଂସେଇଗୁଡ଼ା ତାଙ୍କୁ ଟାଣି ଘୋଷାଡ଼ି ନେଇଗଲେ । କେଉଁଠିକି ନେଇଗଲେ ମୋତେ କହିଲେନାହିଁ । ଯେତେ ମନାକଲି ମାନିଲେନାହିଁ । କହିଲି– ଯେତେ ନେହୁରା ହେଇ କହିଲି– 'ଆଉ ଥରେ– ଆଉ ଥରୁଟେ ମୋତେ ଟିକିଏ ଦେଖା'–କେହି ଶୁଣିଲେନାହିଁ– ମୁହଁରେ ଲୁଗା ଢାଙ୍କିଦେଲେ । ମୋ କୋଳ ଉପରେ ସେ ମୁଣ୍ଡଟି ଥିର୍ ହୋଇ ପଡ଼ିଥିଲା– କାଢ଼ିନେଲେ– ମୋ ପାଖରୁ ଛଡ଼େଇନେଲେ– ଓ-ହୋ-ହୋ, ଆଉ ଟିକିଏ ବି ରଖିଲେନାହିଁ ।''

ସେ କାନ୍ଦଣାରେ ଗୋଟାଏ ଜ୍ୱଳନ ଥିଲା– ସବୁ ପୋଡ଼ି ଯେମିତି ଛାରଖାର କରି ଦେଉଥିଲା ସେ । ସେ ଲୁହରେ ଗୋଟାଏ ତାପ ଥିଲା– ଯାହା ଧାସଲାଗି ସବୁ ତରଳି ପାଣି ହେଇଯାଉଥିଲା । ସେ ସ୍ୱରରେ ଏମିତି ଗୋଟାଏ କମ୍ପନ ଥିଲା, ଯେମିତି ଚାରିଆଡ଼ କମ୍ପିଯାଉଥିଲା ସେଥିରେ ।

ମୁଁ ରଡ଼ିଛାଡ଼ି କାନ୍ଦିଲି । ନୂଆବୋଉ ନିହାତି ପିଲାଙ୍କ ଭଳି ମୋ କୋଳରେ ମଥା ଗୁଞ୍ଜି ଅଣନିଶ୍ୱାସୀ ହୋଇ କାନ୍ଦୁଥାନ୍ତି ।

X X X X

ମୁଁ ତାଙ୍କ ମୁଣ୍ଡ ଉପରେ ବସି ବିଞ୍ଚୁଥାଏଁ । କେତେବେଳେ କେତେବେଳେ ମୁଣ୍ଡ ଆଉଁସି ଦେଉଥାଏଁ । ନୂଆବୋଉଙ୍କ ଆଖିରୁ ଧାର ଛୁଟିଥାଏ । ବେଳେ ବେଳେ ଏମିତି ଗୋଟାଏ ଗୋଟାଏ ନିଶ୍ୱାସ ଛାଡୁଥାନ୍ତି– ଯେମିତି ସେଥିରେ ଶହେ ପାହାଡ଼ ଭାଙ୍ଗିପଡ଼ିବ । ସେ ନିଶ୍ୱାସ ଛାତିର କେତେ ଭିତରୁ ବାହାରିଛି ! ସେ ଯିମିତି ଫୁଟିଲା ଲହୁ ଦିହରେ

ଗାଧୋଇ, ଆଗ୍ନେୟଗିରିର ଲାଭାରେ ବାଜି ଆସିଥିବା ପବନ ଭଳିଆ ଫୁଟୁଛି । ଛାତିକୁ ଜବରଦସ୍ତ ଫଟାଇ ସେ ଯେମିତି ଭିତରଟାକୁ ଦୁଲ୍‌ମାଦୁଲ୍ କରି ବାହାରିଆସିଛି । ମୁଁ ପାଖରେ ବସି ତାର ପ୍ରଖରତା ବେଶ୍ ଉପଲବ୍ଧି କରିପାରୁଥାଏଁ । ବେଳେ ବେଳେ ଡର ହେଉଥାଏ, ହାର୍ଟ୍‌ଫେଲ୍ କରିବ କି ?

ସେତିକିବେଳେ ଗୋଟିଏ ଚାକରାଣୀ 'ବାବୁ'କୁ ଧରି ସେଠିକି ଆସିଲା । ତା' ଉପରେ ଯେମିତି ଆଖିପଡ଼ିଯାଇଛି, ଆଉ ନୂଆବୋଉଙ୍କୁ ସମାଳେ କିଏ ! ଓଃ, କି କୋହ ସେ, କି କାନ୍ଦଣା ସେ, କି ଛାତିଫଟା ଚିତ୍କାର ସେ !!!

'ହତଭାଗା, ତୋର ସବୁ ସରିଗଲା ରେ !'

ଏହି କଥାପଦକ ଭିତରେ ଯେ କେଡ଼େ ବଡ଼ ନୈରାଶ୍ୟ– କେଡ଼େ ଅମାପ କାତରତା, ତା କିଏ ବୁଝିବ ? ଅକୂଳ ଦରିଆ ମଝିରେ ଅସରନ୍ତି ବାଟକୁ ଚାହିଁ ଅସହାୟ ନାଉରୀ ଯେମିତି ଅକାତ ହୋଇ ବସିଥାଏ !

ଚାକରାଣୀ ବାବୁକୁ ନୂଆବୋଉଙ୍କ ପାଖକୁ ନେଲା ।

'ନା-ନା, ନେଇଯା', ନେଇଯା' ତାକୁ ମୋ ପାଖରୁ' ।– ନୂଆବୋଉ ପାଟିକଲେ ।

ବାବୁନି 'ବୋଉ' ବୋଲି ନୂଆବୋଉଙ୍କ ଛାତି ଉପରକୁ ଡେଇଁପଡ଼ିଲା ।

ବାବୁନି ନୂଆବୋଉଙ୍କୁ କୁଣ୍ଢେଇଥାଏ– ନୂଆବୋଧ ବାବୁନିକୁ କୁଣ୍ଢେଇଥାନ୍ତି । ଦୁହେଁଯାକ କାନ୍ଦୁଥାନ୍ତି । ଓଃ, କି କରୁଣ ଦୃଶ୍ୟ ସେ ! ମୁଁ ଛାତିକି ପଥର କରି ପାଖରେ ବସିଥିଲି । ତଥାପି ଗୋଟିପଣେ ଥରୁଥାଏଁ । ଛାତି ଭିତରଟା ପୋଡୁଥାଏ । ଆଖିରୁ ଜବରଦସ୍ତି ଲୁହ ମନା ନମାନି ବାହାରିପଡୁଥାଏ ।

''ବିଭୂତି, ତମେ ମୋ ମୁଣ୍ଡ ଆଉଁସି ଦେଉଛ, ମୋତେ ବିଞ୍ଚି ଦେଉଛ, ବାବୁନି ମୋ ଛାତି ଉପରେ ଅଛି– ବାବୁନିକି ମୁଁ ଛାତିରେ ଯାକିଧରିଛି– ନାଃ– କଉଥିରେ ଯାଉନାହିଁ– କଉଥିରେ ଯିବ ନାହିଁ– ମୋତେ କିଛି ଭଲଲାଗୁନାହିଁ ।''

ମୁଁ ତାଙ୍କ ମୁହଁକୁ ଚାହିଁଥିଲି । ଭିତରର ଅତି ଅସହ୍ୟ ଯନ୍ତ୍ରଣା ଚାପା ନମାନି ଯେମିତି ଉଛୁଳି ଉଠୁଥିଲା ସେଠି ।

''ବିଭୂତି, ମୋର ଆଉ ରହିଲା କ'ଣ ? ମୁଁ ଆଉ ବଞ୍ଚିବି କାହିଁକି ? ମୋତେ ଟିକିଏ ବିଷ ଦିଅ– ତମର ବହୁତ ଧର୍ମ ହେବ ।'– ନୂଆବୋଉଙ୍କର କେଡ଼େ କାତର କଣ୍ଠ– କି ଆରତ ମିନତି !

—ବିଷ ? ଆତ୍ମହତ୍ୟା ବଡ଼ ପାପ ନୂଆବୋଉ ! ମୁଁ କହିଲି ।

ହେଉ ପାପ । ନରକରେ ପକେଇବେ ତ ? ସେ କ'ଣ ୟାଠୁଁ ବେଶି ? କେଭେଁ ନୁହେଁ । ମୋତେ ମାରିଦିଅ ବିଭୂତି !

ବିଭୂତି, ମୋର କ'ଣ ହେଲା !

ଓଃ ! ହତାଶାର ଭାଷା କି କରୁଣ । ମୁଁ ଭାବି ଦେଖିଲି ସତେ ନୂଆବୋଉଙ୍କର ଏ କ'ଣ ହେଲା ?

ଏମିତି କାହିଁକି କହୁଛ ନୂଆବୋଉ ?– ମୁଁ ସାନ୍ତ୍ୱନା ଦେଲି ।

କହିବି ନାହିଁ ବିଭୂତି ? ସତେ, ମୋର ଆଉ ଅଛି କ’ଣ ! ମୋ ମୁହଁ ବି ଆଉ କେହି ଚାହିଁବେ ନାହିଁ । ମୋ ମୁହଁରେ ଯଶ ନାହିଁ । ମୋତେ ଦେଖି କେତେଲୋକ କେତେକଥା କହିବେ– କେତେ ଝିଙ୍ଗାସିବେ । ‘ରାଣ୍ଡୁଟା’ ବୋଲି ନାକଟେକିବେ । କାମ କାର୍ଯ୍ୟରେ ମୋତେ କେହି ଡାକିବେନାହିଁ । ମୁଁ ଗୋଟାଏ ଅଲୋଡ଼ା ଅପଚରା ଜୀବ ହୋଇ ରହିବି ସିନା ବିଭୂତି ! ମୋର ଆଉ କ’ଣ ରହିଲା !

ମୁଁ ଭାବିଲି– ସତେ ତ ! କିନ୍ତୁ ସମାଜ ଯାହା କହେ, ମଣିଷ କ’ଣ ସବୁବେଳେ ତାକୁ ମାନି ଚଳିବାକୁ ବାଧ ? ସମାଜର କେତେଗୁଡ଼ାଏ ମନଗଢ଼ା ଆଚାର, ନୀତି, ବାରଣ କ’ଣ ଏତେ ସତ ଯେ ମଣିଷର ଜୀବନ ଭଳିଆ ଅଲଭ୍ୟ ଅମୂଲ୍ୟ ଏଡ଼େ ବଡ଼ ଗୋଟାଏ ଜିନିଷ, ଖାଲି ଛିନିଛତର ହୋଇଯିବ ତା’ରି ଖାତିରରେ– ଗୋଡ଼ିମାଟି ହୋଇଯିବ ତାରି ତାଡ଼ନାରେ ! ମଣିଷର ବୁଦ୍ଧି, ମଣିଷର ବିବେକ, ମଣିଷର ନ୍ୟାୟ, ଧର୍ମ, ମଣିଷର ଦୟାମାୟା, ମଣିଷର ମନୁଷ୍ୟତ୍ୱ, ଦେବତ୍ୱ କିଛି ମାନିବନାହିଁ ସେ ? ଏ ନିୟମ, ଏ ଶୃଙ୍ଖଳାକୁ ତିଳ ପ୍ରମାଣରେ କେହି ଘୁଞ୍ଚେଇପାରିବନାହିଁ ? ମଣିଷ ନିଜପାଇଁ ନିଜେ ଯେଉଁ ଶାସନ ଦେଇଛି, ତା’ରି ତଳେ ଚାପାପଡ଼ି ମରିବ ପଛେ, ସେ ଆଉ ଶାସନକୁ ଟିକିଏ ହେଲେ କୋହଳ କରିପାରିବନାହିଁ !

ନାଇଁ ବିଭୂତି, ମୁଁ ଆଉ ଏ ଜୀବ ରଖିବିନାହିଁ– ଏ ମୁହଁ ମୁଁ କାହାରିକି ଦେଖାଇବି ନାହିଁ । ନୂଆବୋଉ କହିଲେ ।

ମୁଁ କହିଲି– ନୂଆବୋଉ, ମଣିଷ କ’ଣ ଖାଲି ନିଜପାଇଁ– ଆପଣାର ସ୍ୱାର୍ଥପାଇଁ ବଞ୍ଚି ରହେ ? ତମେ ଦେଖୁଛ, ତମ ଆଗରେ ବାବୁନି, ବାପଛେଉଣ୍ଡ ପିଲାଟି । ତାର ଭବିଷ୍ୟତ, ତାର ଭଲ ମନ୍ଦର ଜିମା କିଏ ନେବ– କିଏ ଦାୟୀ ଏଥିପାଇଁ ? ଆଉ ମୁଁ ! ମୋ କଥା ଛାଡ଼ । ମୁଁ ସବୁଦିନେ ଦୁଃଖୀ, ଆଜି ବା ତା’ଠାରୁ ଅଧିକା କ’ଣ ହେବ ! ଏଡ଼େ ଟିକିଏ ହେଇଥିଲି, ମା’ ମରିଗଲା । ଆଜି ତମେ ମରିଯିବ । ମୋ କଥା ଛାଡ଼ିଦିଅ । ବାବୁନି ତ ଅଛି !

ନୂଆବୋଉ ମୋତେ ଘଡ଼ିଏ ଖଣ୍ଡେ ଚାହିଁଲେ । ତାଙ୍କ ଆଖି ଛଳଛଳ ହୋଇଆସିଲା ।

ବିଭୂତି, ମୋର ବୋଲି ଗର୍ବ କରିବି କ’ଣ ନେଇ– ଭଗବାନ– ମୋ ଗର୍ବ ଭାଙ୍ଗିଦେଲେ ବିଭୂତି !

ନୂଆବୋଉ, ମୁଁ କ’ଣ ତମର ନୁହେଁ ?

ନୂଆବୋଉ ମୋତେ କୁଣ୍ଢେଇପକାଇଲେ– ପିଲାଙ୍କୁ ଗେଲକଲା ପରି । ତାଙ୍କ ଆଖିରୁ ଝରଝର ଲୁହ ବହିପଡ଼ିଲା ।

X X X X

ବର୍ଷା ଆସେ–ଝଡ଼ ହୁଏ– ତୋଫାନ୍ ହୁଏ–ବଜ୍ର ବିଜୁଳି କି ଭୟଙ୍କର !

ସେ ପୁଣି ଥମିଯାଏ । ଝଡ଼ ଚାଲିଯାଏ । ତୋଫାନ୍ ଉଡ଼ିଯାଏ । ପୃଥିବୀ ନୀରବ ନିସ୍ତବ୍ଧ– ଶାନ୍ତ ଗମ୍ଭୀର– ଧୀର ମଧୁର– କୋମଳ ନିର୍ମଳ ହେଇଆସେ ।

ପୁଣି ଖରା ହୁଏ । ରାସ୍ତାଘାଟ ଶୁଖିଯାଏ । ପାଣି କାଦୁଅ ଚାଲିଯାଏ । ମାଟି ପୁଣି ଫାଟିପଡ଼େ । କେତେ ଦିନର ଅମଡ଼ା ବାଟ ଉପରେ ମଣିଷ ପୁଣି ମାଡ଼ି ଚାଲିବାକୁ ଅଣ୍ଟା ଭିଡ଼େ । ଚାଲେ । ପୁଣି ବାଟ ଫିଟିଯାଏ— ରାସ୍ତା ପଡ଼ିଯାଏ ।

ତୋଫାନ୍ ହୁଏ । ନିର୍ମଳ ନିଥର ଜଳ ଚଞ୍ଚଳ ହୋଇପଡ଼େ । ଢେଉ ଉଠେ । ଘୂର୍ଣ୍ଣି ହୁଏ । ନୌକା ବୁଡ଼େ ।

ସମୁଦ୍ର ପୁଣି ଗମ୍ଭୀର ହୋଇଆସେ । ତୋଫାନ୍ ସାଙ୍ଗରେ ଯୁଝି ସେ ଥକା ହୋଇ ଶୋଇଯାଏ । ଘୂର୍ଣ୍ଣି ଚାଲିଯାଏ । ସମୁଦ୍ର ନିଛାଟ ହୋଇ ପଡ଼ିରହେ । ଢେଉ ଥମେ । ମାତୁରା ଦରିଆ ନରମିଆସେ । ପୁଣି ନାଆ ଚାଲେ ।

ଦିନ ପରେ ଦିନ ଚାଲିଯାଏ କୁଆଡ଼େ । ଏଡ଼େ ବଡ଼ ଘା'ଟା, ଏଡ଼ିକି ବକଟେ ହେଇ ଆସେ । ଦିନ କିନ୍ତୁ ଯିବାରେ ଲାଗିଥାଏ । କାହାରିକି ଅପେକ୍ଷାନାହିଁ— ଭ୍ରୂକ୍ଷେପନାହିଁ । ଘା' ପାଇଁ ତାର ମମତା ବି ହୁଏନାହିଁ । ଘା'ଟା କିନ୍ତୁ ସମୟ ପଛରେ ଗୋଡ଼େଇ ଥାଏ । କ୍ରମେ ଘା' ନିଜକୁ ଭୁଲିଯାଏ— ନିଜର ଅସ୍ତିତ୍ୱ ହରାଇବସେ— ଶୁଖିଆସେ— ଚାଲିଯାଏ ଦେହରୁ । ଖାଲି ଗୋଟାଏ ଦାଗ ରହେ ସେଠି । ବଥା ଥାଏ କେତେଦିନ — ଖୁବ୍ ସାମାନ୍ୟ ! କୁଟାଟାଏ କି କାଠିଟାଏ ବାଜିଗଲେ ବାଧେ । ସେ ବି ଚାଲିଯାଏ । ଖାଲି ରହେ ଶୁଖିଲା ଦାଗଟା— ଶକ୍ତ, ବଧିରା, ଚାହିଁଲେ କେତେବେଳେ କେମିତି ମନେପଡ଼େ— ନଇଲେ ନାଇଁ । ସେ ମମତାହୀନ ମନେପକାଇବାର ମୂଲ୍ୟ ବା କ'ଣ !

କ୍ରମେ କ୍ରମେ ସବୁ ସ୍ଥିର ହୋଇଆସିଲା । ଝଡ଼ ଛାଡ଼ିଗଲା— ତୋଫାନ୍ ଉଡ଼ିଗଲା— ବତାସ ଥମିଗଲା । ସବୁ ଶାନ୍ତ—ସବୁ ନିରବ — ନିସ୍ପନ୍ଦ !

ନୂଆବୋଉ ଗମ୍ଭୀର । ନୂଆବୋଉଙ୍କ ମୁହଁରେ ଗୁରୁତା । ନୂଆବୋଉ ଏବେ କାମ ଦାମ କଲେଣି । ଦିନଯାକ ସେ ଖଟୁଥାନ୍ତି । ବିରାମ ନଥାଏ । ନୂଆବୋଉ ଉଦାସ । ନୂଆବୋଉ ଯନ୍ତ୍ର । ଯନ୍ତ୍ରଚାଳନା ପରି ସେ ସକାଳୁ ସଞ୍ଜଯାଏଁ କାମ କରିଯାଉଥିଲେ । ଆଉ କେଉଁଠିକି ଦୃଷ୍ଟିନାହିଁ— ଅନିଷା ନାହିଁ । ଭାଇ ଯେଉଁଠି ମରିଥିଲେ— ସେଇ ଘରକୁ ଗଲେ ସେ ଚିତ୍କାର କରି କାନ୍ଦୁଥିଲେ— ମୂର୍ଚ୍ଛା ହେଇଯାଉଥିଲେ— ସେଇ ଘର ଭିତରେ ସେ ଦିନରେ ଦଶଥର ନଟପଟ ହୁଅନ୍ତି— କିଛି କହନ୍ତିନାହିଁ ।

ଯେଉଁ ଫଟ ଦେଖିଲାକ୍ଷଣି ଆଖିରୁ ଝର ଝର ଲୁହ ବହିପଡୁଥିଲା, ଯେଉଁ ନାମ କେହି କହିଲାକ୍ଷଣି ଦୀର୍ଘନିଃଶ୍ୱାସ ଉଠୁଥିଲା— ସେଇ ନାଁ ଆଜି ହଜାରେଥର କହିଯାନ୍ତି, ସେହି ଫଟ ଆଗରେରଖି ସେ ଘଣ୍ଟା ଘଣ୍ଟା ପୂଜା କରନ୍ତି— ଲୁହ ନାହିଁ— ନିଶ୍ୱାସ ନାହିଁ— ଭାବର ପରିବର୍ତ୍ତନ ପର୍ଯ୍ୟନ୍ତ ନାହିଁ— କିଛି ନାହିଁ । ଖରା, ବରଷା, ଶୀତ, କାକରରେ ପଡ଼ି ପଡ଼ି ସରବସହା ଅକର୍ମଶୀଳା ଭଳି ସେ ଯେମିତି ପାଷାଣ ପାଲଟିଗଲେଣି ।

ସେ ଭୁଲିଯାଉଥିଲେ । ଭାଇଙ୍କୁ ନୁହେଁ, ଭାଇଙ୍କର ଯାହାକିଛି ଥିଲା ତାଙ୍କ ପାଖରେ, ତାକୁ ସବୁ ସେ ଗୋଟି ଗୋଟି କରି ପୁରୁଣା ଜିନିଷ ଫିଙ୍ଗିଲା ପରି ଫିଙ୍ଗିଦେଇ ଯାଉଥିଲେ; କିମ୍ୱା ସେସବୁ ଆପେ ଆପେ ଘୁଣ ଧରିଯାଉଥିଲା । ସେ କ'ଣ ମନେକରି, ରାଜିହୋଇ,

ସ୍ୱଇଚ୍ଛାରେ ସବୁ ଫିଙ୍ଗିଦେଉଥିଲେ ? ନା– ତା' ନୁହେଁ । ସେ ଫିଙ୍ଗିଦେବାକୁ ବାଧ ହେଉଥିଲେ । ନିଜର ହୁଏ ତ ସେକଥା ବୁଝିପାରିବା ଭଳିଆ ଧୀର ବୁଦ୍ଧି ନଥିଲା । ହୁଏ ତ ସେ ନିଜେ ଯେତେବେଳେ ଚାହିଁ ଦେଖୁଥିବେ ଯେ ନିଜର ଅସାବଧାନତାରେ କ'ଣ ସବୁ ହଜିଯାଉଛି, ସେତେବେଳେ ସେ ଆଶ୍ଚର୍ଯ୍ୟ ହୋଇ ଚାହୁଁଥିବେ; କିନ୍ତୁ ଆଖିର ଲୁହ ସେତେବେଳକୁ ଶୁଖିଯାଇଛି– ବୁକୁର ଆହା ସେତେବେଳକୁ ଦବିଯାଉଛି– ତାକୁ ଆଉ ଖୋଜିଆଣି ଦେବା ଭଳିଆ ଶକ୍ତି ତାଙ୍କର ନାହିଁ– ଆଉ କେହି ଆଣି ଦେଇପାରିବନାହିଁ । ସେ ନିରୁପାୟ । ଆଶା ଛାଡ଼ିଦେଇ ବସୁଥିବେ । ଭାବୁଥିବେ–ଯାହା ଗଲାଣି ତାକୁ ଆଉ ଚାହିଁ ଲାଭ କ'ଣ – ଚାହିଁଲେ ତାକୁ ଫେରାଇ ଆଣିହେବନାହିଁ । ଡାକିଲେ ସେ ଲେଉଟି ଆସିବନାହିଁ । ଆଉ ତା ପାଇଁ ଅଯଥା ଦୁଃଖ କରିବେ କାହିଁକି ? ଖାଲି ଅବଶୋଷ– ଶୁଖିଲା ଅଲାଗିଲା ଅବଶୋଷ ଟିକକ ଯାହା ରହୁଛି ସେ ବି ଉଡ଼ିଯାଉଛି, କପୂର ବାସନା ଭଳି । ଆଉ କାହିଁକି ? ଯାହା ଯିବାର ଯାଉ– ଯାହା ରହିପାରିବନାହିଁ ସେ ନରହୁ । ଯାହା ରହିଛି– ଯାହା ରହୁଛି ତାକୁଇ ନେଇ ଘର କରିବାକୁ ହେବ, ନୀଡ଼ ବାନ୍ଧିବାକୁ ହେବ । ନକଲେ ଯେ ଆନ ଗତି ନାହିଁ । ସେଇ ତ ସ୍ୱଭାବର ତାଡ଼ନା– ଦେହର ମାୟା ।

ନୂଆବୋଉଙ୍କୁ ଦେଖି ଦେଖି ମୁଁ ଭାବେଁ – ଦୁନିଆଟାଯାକ ବୋଧେ ଖାଲି ନିଜପାଇଁ । ଋଷି ସନ୍ନ୍ୟାସୀ ଯେଉଁମାନେ ଯିଏ ଘରସଂସାର ଛାଡ଼ିଛନ୍ତି, ଅଶନ ବ୍ୟସନ ତ୍ୟାଗ କରିଛନ୍ତି, ଆରାମ ଅଏସ୍ ଭୁଲିଛନ୍ତି, ସେ ବି ଯାଇଛନ୍ତି ନିଜପାଇଁ କଷ୍ଟ ସହିବାକୁ, ତୁମ ଆମ କଥା ଛାଡ଼ିଦିଅ । ସ୍ତ୍ରୀ ପୁରୁଷ । କପୋତ କପୋତୀ । ହିନ୍ଦୁ ସମାଜର ସାବିତ୍ରୀ ସତ୍ୟବାନ । ମନ୍ତ୍ରର ଆଶୀର୍ବାଦରେ ଶକ୍ତ ତାଙ୍କର ବନ୍ଧନ– ଛିନ୍ନ ହୋଇଯାଏ । କେହି ରକ୍ଷା କରି ପାରେନାହିଁ । ରକ୍ଷା କରିବାର କ୍ଷମତା କାହାରି ନାହିଁ । ସ୍ତ୍ରୀ ମରିଯାଏ – ପୁରୁଷ କାନ୍ଦେ– ବଡ଼ ଜୋର୍ ଦିନେ ଦୁଇଦିନ । ପୁରୁଷ ମରିଯାଏ, ସ୍ତ୍ରୀ ବାହୁନେ– ଦିନେ ଦୁଇଦିନ ନ ହେଲା– ବର୍ଷେ ଅଧେ ବି ହେଉ– ସେ କାନ୍ଦେ; କିନ୍ତୁ କ୍ରମେ କାନ୍ଦଣାର ଆନ୍ତରିକତା କମି ଆସେ । କାହିଁକି ? ମଣିଷ କେବଳ ନିଜପାଇଁ ନୂଆ ସରଞ୍ଜାମ ସଜାଇବାକୁ ବାଧହୋଇ ବାହାରିପଡ଼େ ବୋଲି । ସ୍ତ୍ରୀପାଇଁ ପୁରୁଷ, ଆଉ ପୁରୁଷ ପାଇଁ ସ୍ତ୍ରୀ । ପୁରୁଷତ୍ୱ ସ୍ତ୍ରୀକୁ ଅପେକ୍ଷା କରେନାହିଁ କିମ୍ବା ସ୍ତ୍ରୀତ୍ୱ ପୁରୁଷକୁ ଅପେକ୍ଷା କରେନାହିଁ । ପୁରୁଷତ୍ୱ ସ୍ତ୍ରୀକୁ ନିଜର ଉପଯୋଗୀ କରି ସ୍ତ୍ରୀର ସଂସାର ଆଉ ସ୍ତ୍ରୀତ୍ୱକୁ ସ୍ୱାର୍ଥରେ ଲଗାଇ ପୁରୁଷର ସାର୍ଥକତା । ଉପଯୋଗିତା ବା ସ୍ୱାର୍ଥ ଯେଉଁଠି ନଷ୍ଟ ହୋଇଯାଏ ସେଠି କେହି କାହାରି ପାଇଁ ଅପେକ୍ଷା କରନ୍ତିନାହିଁ– ଚାଲିଯାଆନ୍ତି ଧୀରେ ସୁସ୍ଥେ ନିଜର ନୂଆ ଉପକରଣ ଆହରଣ କରିବାକୁ । ଅନ୍ୟର ମୋହ– ପର ପାଇଁ ମମତା ଖାଲି ଗୋଟାଏ ଆବରଣ– ଖୋଳ– ସାପକାତି ପରି । ଦେହର ମାୟା ଆଗରେ ସେ କିଛି ନୁହେଁ । ମଣିଷ ତାକୁ ଅକ୍ଳେଶରେ ଛାଡ଼ି ଚାଲି ଯାଇପାରେ । ମଣିଷର କ୍ଷଣିକ ଅବଶୋଷ ଛଡ଼ା ଆଉ ହାନିଲାଭ ବିଶେଷ କିଛି ହୁଏନା । ମଣିଷର ମନୁଷ୍ୟତ୍ୱରେ ସେଥିରୁ କିଛି ଯାଏ ଆସେ ନାହିଁ । ସମାଜ ସିନା ଧରି ବାନ୍ଧି ଜଟିଳ ଜୀବନଟାକୁ ଗୋଟାଏ ଧାରାରେ ପକାଇବାକୁ ଧମକ ଦେଉଥାଏ; କିନ୍ତୁ ମଣିଷ

ସବୁବେଳେ ଚାହୁଁଥାଏ କେମିତି ତ୍ରାହି ପାଇବ ସେଥିରୁ । ମଣିଷର ଦୁର୍ବଳତା, ମନୁଷ୍ୟର ଭୀରୁତା, ଡର, ଭୟ, ଅଲଣା ଅପମାନ ଜ୍ଞାନ ତାକୁ ଦାବିଦିଏ । ମଣିଷ ଦୁର୍ବଳ ହୋଇପଡ଼େ– କ୍ରମେ କ୍ରମେ ବେଶି । ସେ ଆଉ ଉଠିପାରେନାହିଁ ।

ନୂଆବୋଉଙ୍କର ଜୀବନର ସବୁ ଆବୁଡ଼ାଖାବୁଡ଼ା ନିୟମର ଛାଞ୍ଚ ଭିତରେ ପଡ଼ି ଅନ୍ତତଃ ଉପରକୁ ମନେହେଉଥିଲା ସବୁ ସମାନ ହେଇଯାଉଛି । ସମୟ ସାଙ୍ଗରେ ଦୌଡ଼ିବାକୁ ଯାଇ ସେ ଯେମିତି ଅନ୍ୟମନସ୍କ ଭାବରେ ଅନେକ ମନ କଥାକୁ ଭୁଲି ଯାଉଛନ୍ତି– ଆପଣାର ବୋଲି ଦିନେ ଯାହାକୁ ଯେ ଆଦରରେ ଜଡ଼ାଇ ରଖିଥିଲେ, ଆଜି ତାକୁ ସେ ନିଜର ଅଖାତିରରେ ଦେହରୁ ଲୁଗା ଉଡ଼ିଗଲା ପରି କାତି ଛାଡ଼ିଗଲା ପରି ଫିଙ୍ଗିଦେଇ ପଳାଇ ଯାଉଛନ୍ତି । ତାଙ୍କର ଯିମିତି ତରନାହିଁ କାହାରିକି ଅପେକ୍ଷା କରିବାକୁ । ନିଶା ଖାଇ ଅନବରତ ପ୍ରଳାପ ବକିଲା ଭଳି ସେ ସକାଳୁ ସଞ୍ଜଯାଏ ଅବିଶ୍ରାନ୍ତ କାମକରି ଚାଲିଯାଉଛନ୍ତି । ପରିଶ୍ରମଟା ତାଙ୍କୁ ଯିମିତି ସହିଗଲାଣି । କ୍ଲାନ୍ତି ନାହିଁ । ଅବସାଦ ନାହିଁ । ବିରକ୍ତିନାହିଁ । ଗୋଟାଏ ଲୋକ । ଦେଖିଲେ କେହି ମନେକରିବନାହିଁ ଯେ ଏ ଗୋଟାଏ ଜୀବନ ଯାହାର ଦିନେ ସୁଖ ଥିଲା ଆଉ ଥିଲା, ସେହି ସୁଖଠାରୁ ବଳି, ଶହେ ଗୁଣ କି ଲକ୍ଷେ ଗୁଣ ହେବ ଅଧିକା ଦୁଃଖ । ସେସବୁ ଗଲା କଥା, ବାଟରେ ଖସିପଡ଼ିଛି । ତାକୁ ଆଉ କିଏ ଉଠେଇନେବଣି ।

ସମୟ– ସମୟ ! ମଣିଷ ସମୟ ପଛରେ ଦୌଡ଼େ । ଦଉଡ଼ି ଦଉଡ଼ି ଥକିପଡ଼େ । ଦେଖେ ଯେ, କସ୍ତୁରୀମୃଗ ଭଳି ସେ କେବଳ ଏତେ ଦିନ ଆପଣା ଗନ୍ଧ ପଛରେ ଦୌଡ଼ିଛି । ସମୟ କାହିଁ ?

ସମୟ ସବୁ ହରିନିଏ । ଦୁଃଖ ନିଏ– ସୁଖ ନିଏ– ସବୁ । ଶେଷରେ ମଣିଷକୁ – କେଉଁ ଅତଳ ଗହୀରରେ ନେଇ ବୁଡାଇଦିଏ । ଆଶ୍ଚର୍ଯ୍ୟ ! ମଣିଷ ସେତିକି ବୁଝିପାରେ ନାହିଁ । ବୁଝିଲେ ବା କରିବ କ'ଣ ?

X X X X

ଖାଲି ହାତ, ଖାଲି ବେକ, ଖାଲି ନାକ, ଖାଲି କାନ, ଥାନ ଲୁଗା । ନୂଆବୋଉଙ୍କୁ ଦେଖିଲେ ମନଭିତରେ ପ୍ରଥମେ ପ୍ରଥମେ ଗୋଟାଏ ବିଦ୍ରୋହ ଜାଗିଉଠୁଥିଲା; କିନ୍ତୁ ରୁଚିଟା ମଣିଷର ବଦଳିଯାଏ । ଦରକାର ଘେନି କାଳପାତ୍ର ସ୍ଥାନରେ ବିବେଚନାକୁ ଡରି ରୁଚି ପୁଣି ଶୁଚି ହୋଇ ନୂଆ ରୂପକୁ ନିଏ । ଅଭ୍ୟାସ ତାକୁ ପୁଣି ଆଉ ଗୋଟାଏ ବାଟରେ ପକାଏ । ନୂଆବୋଉଙ୍କର ସେ ରୂପ ଦେଖିଲେ ମୋର ଭାରି କଷ୍ଟ ହେଉଥିଲା; କିନ୍ତୁ ଆଜିକାଲି ଆଉ ହୁଏନାହିଁ । ମୁଣ୍ଡରେ ତେଲ ଲଗାନ୍ତିନାହିଁ । ମୁଣ୍ଡ କୁଣ୍ଡିଆ ହୁଏନାହିଁ । ଲୁଗାଟା ଅନ୍ତତଃ ଯେତେଥର ସଫା ହେବା ଦରକାର ସେତେଥର ସଫାହେବାପାଇଁ ଅବସର ପାଏନାହିଁ । ପ୍ରଥମେ ପ୍ରଥମେ ଏସବୁ ମୋତେ ବଡ଼ ଖରାପ ଲାଗୁଥିଲା । ମୁଁ ଯଦି କହେଁ– ''ନୂଆବୋଉ ! ଟିକିଏ ମୁଣ୍ଡରେ ତେଲ ଦେଇ କୁଣ୍ଡେଇ ପକାଅ'' ତେବେ ଯଦି ମାସକରେ କୁଣ୍ଡାଇବାର ଥାଏ ଦୁଇମାସ ଚାଲିଯିବ । ମୁଁ ଯଦି କହିବି, ''ନୂଆବୋଉ, ଲୁଗାଟା

ଭାରି ମଳି ହେଲାଣି'' ତେବେ ଲୁଗାଟା କାଲି ଧୋବାଘରେ ପଡ଼ିବାର ଥିଲେ ଧୋବାକୁ ଆଉ ଦି'ଦିନ ଗଡ଼େଇ ଆସିବାପାଇଁ କୁହାହେବ। ଏଟା ଯେ ମୋ ଉପରେ ରାଗି ଜିଦ୍ ଧରି ବା ଅନ୍ୟ କୌଣସି ଅସଙ୍ଗତ କାରଣରୁ ହୁଏ, ତା' ନୁହେଁ। ମୁଁ ବୁଝେଁ, ଯେପରି ମଣିଷ ନିଜକୁ ଅଯତ୍ନ କରିବାପାଇଁ ମଧ ଭଲକରି ଯତ୍ନ ନନେଲେ ଚଳିବନାହିଁ। ବାହାରର ଏକ ଅସାବଧାନତାରୁ ମନେହୁଏ ଭିତରର ଏକ ପ୍ରବଳ ସତର୍କତାକୁ ସେ ଜବରଦସ୍ତି ଅସ୍ୱୀକାର କରିବାକୁ ଚାହାନ୍ତି।

ଦିହ ହୁଏ, ଓଷଧ ଖାଇବାକୁ ଦେଲେ ଖାଇବେନାହିଁ। ମୁଁ ବିରକ୍ତ ହୁଏ। ଜୀବନ ପ୍ରତି– ଶରୀର ପ୍ରତି ଅନ୍ୟାୟ ଆଚରଣ ମୋର ସହ୍ୟହୁଏନାହିଁ। ଯେ ମରିବାକୁ ଚାହେଁ, ସେ ନିଜକୁ ଏପରି ଦହଗଞ୍ଜ କରି ମାରିବାରେ କି ସୁଖ ପାଏ ମୁଁ ବୁଝିପାରେନାହିଁ। ନିଜକୁ କଷ୍ଟଦେଲେ ମଣିଷ ନିଜେ ଯେ ବଞ୍ଚି ରହିଛି, ସେଇଟା ସେ ଗଭୀର ଭାବରେ ଅନୁଭବ କରି କ'ଣ ଗୋଟାଏ ଅଧିକା ଆନନ୍ଦ ପାଏ ! କିମ୍ୱା ଦେହର କୌଣସି ମାଗୁଣିକି ମଣିଷ ମେଣ୍ଟନ କରିବାର ସୁବିଧା ନପାଇଲେ, ମୂର୍ଖ ସେ, ଆପଣାର ଦେହ ଉପରେ ଅଯଥା ଅତ୍ୟାଚାର କରେ।

X X X X

ତିନୋଟି ଜୀବନ ନେଇ ନୂଆବୋଉଙ୍କର ସଂସାର। ବାପା, ମୁଁ ଆଉ ବାବୁନି। ମୁଁ ଦେଖେଁ, ନୂଆବୋଉଙ୍କର ନଜରଟା ସବୁବେଳେ ଘୂରୁଥାଏ ଏଇ ତିନୋଟି ବସ୍ତୁକୁ ସମାନ ବ୍ୟାସରେ ରଖି। ନିଜପାଇଁ ସେ ବୃତ୍ତର ମଧବିନ୍ଦୁ ବାହାର କରି ନେଇପାରନ୍ତି ବଡ଼ ସହଜରେ। ତଥାପି ମୁଁ ଭାବେଁ ନୂଆବୋଉ ମତେ ଯେପରି ଭଲପାଆନ୍ତି, ସେତେ ଭଲ ବାବୁନିକି ବି ପାଉନଥିବେ।

ମୋ ଦିହ କିଛି ହେଲେ ନୂଆବୋଉ ବ୍ୟସ୍ତ ହେଇପଡ଼ନ୍ତି। ମୋ ପାଇଁ କେହି ବ୍ୟସ୍ତ ହେଲେ ମୋତେ ବଡ଼ ମାଡ଼ିପଡ଼େ; କିନ୍ତୁ ତଥାପି ଯେପରି ନୂଆବୋଉଙ୍କର ସେଇ ବ୍ୟସ୍ତତାରୁ ମୁଁ ଆନନ୍ଦ ପାଏ।

ନୂଆବୋଉ ମୋତେ ଥଟ୍ଟା କରନ୍ତି– ଏବେ ବି ଥଟ୍ଟା କରନ୍ତି। ପ୍ରଥମେ ପ୍ରଥମେ ସେ ଥଟ୍ଟାରେ ଗୋଟାଏ ପରାସ ଥିଲା; କିନ୍ତୁ ଏବେ– ସେ ଥଟ୍ଟାରୁ ମିଳେ ଗୋଟାଏ ଆମୋଦର ଆମେଜ୍।

ସେ ମୋତେ କଥାରେ କଥାରେ ନଳ, କେଦାର, ଯକ୍ଷ, ସତ୍ୟବାନ୍ ବୋଲି କହି ଟାପରା ଲଗାନ୍ତି– ଅବଶ୍ୟ ମନ ଯେତେବେଳେ ହାଲୁକା ଥାଏ। କିନ୍ତୁ ସେଦିନ– ସେଇ ପ୍ରଥମ ଦିନର ଡାକରା ପରି ଏତେ ମିଠା ଆଉ କେବେ ଲାଗେନାହିଁ !

ଦିନେ ମୁଁ ଚାଲିଯାଉଥିଲି। ସେ ବସି ପାନ ଭାଙ୍ଗୁଥିଲେ। ପଛଆଡୁ ଡାକିଲେ– କିହୋ ସତ୍ୟବାନ୍, ଶୁଣ।

ମୁଁ ଫଟ୍‌କିନି ବୁଲିପଡ଼ି କହିଲି– କାହାନ୍ତି ?

କିଏ ?– ସେ ଆଶ୍ଚର୍ଯ୍ୟ ହୋଇଗଲେ।

ସାବିତ୍ରୀ— ମୁଁ ଉତ୍ତରଦେଲି ।

—ସାବିତ୍ରୀ ଏଠିକି ଆସିବେ କେଉଁଠୁ ?

—ଆଉ ଖାଲିଟା ଡାକୁଥିଲ ନା ? ମୁଁ କହିଲି ବା ସାବିତ୍ରୀ ଅଛନ୍ତି, ସତ୍ୟବାନ୍‌ଙ୍କୁ ଆଣି ମେଳନ କରିଦେବାପାଇଁ ମୋତେ ଡାକୁଥିଲ ।

—ସାବିତ୍ରୀ କ'ଣ ସତ ସତ ଅଛନ୍ତି ?

—ଆଉ କ'ଣ ନାହାନ୍ତି ?

—କେଜାଣି— ତମେ ଜାଣିଥିବ ନା ?

—ଓ— ମୋର ଜାଣିବାର କଥା, ନା ? ଆଚ୍ଛା ରହ— ମୁଁ ଟିକିଏ ଧ୍ୟାନକରି ଦେଖେଁ । —କହି ସତ ସତ ଆଖି ବୁଜିଦେଲି । ତା'ପରେ ଆଖି ଖୋଲି କହିଲି— ନୂଆବୋଉ, ସାବିତ୍ରୀ ଜନ୍ମ ହେବେ । ମା' ପେଟରେ ଅଛନ୍ତି— ତିନିମାସ ହେଇଛି । ଅପେକ୍ଷା କରିବାକୁ ହବ ଟିକିଏ । ଆଚ୍ଛା ଅପେକ୍ଷା କର । ସାବିତ୍ରୀ ଜନ୍ମ ହୋଇ ବଡ଼ ହୋଇ ଆସନ୍ତୁ— ମୋତେ ଡାକିବ । ହେଲା ? —କହି ମୁଁ ଫେରି ଚାଲିଯାଉଥିଲି ।

—ନାଇଁ ନାଇଁ— ଥଟ୍ଟା ନୁହେଁ—ଶୁଣ—ଶୁଣ । ନୂଆବୋଉ ପୁଣି ଡାକିଲେ ।

ମୁଁ କହିଲି— କ'ଣ ?

—ଶୁଣ— ବସ । ଏତେ ତରତର ହେଲେ ହେବ ନା ?

ମୁଁ ଯାଇ ନୂଆବୋଉଙ୍କ ପାଖରେ ବସିଲି ।

—ବାପା କହୁଥିଲେ... ନୂଆବୋଉ ରହିଗଲେ ।

—କ'ଣ ?

—ତମ ବାହାଘର କଥା ।

ନୂଆବୋଉଙ୍କର ଏକଥା ଶୁଣି ମୁଁ ଟିକିଏ ଆଶ୍ଚର୍ଯ୍ୟ ହେଲି । ୟା ଆଗରୁ ନୂଆବୋଉ ଏଡ଼େ ଖୋଲା କରି ମୋ ବାହା ହବା କଥାଟା ମୋତେ ପଚାରିନଥିଲେ— ସେଥିପାଇଁ ।

ବରଷଟାଏ ଯାଇଛି କି ନାହିଁ । ଭାଇ ମରିଗଲେ । ସେ ଘା'ଟା ଶୁଖିନାହିଁ । ଏତେବେଳେ ବାହାହବା କଥାଟା କେଡ଼େ ଅଲାଗିଲା ପରି ଲାଗିଲା । ମୁଁ ନୂଆବୋଉଙ୍କ ମୁହଁକୁ ଅନାଇଲି । ସେ ବି ଗୋଟାଏ ଜବାବ ପାଇବା ଆଶାରେ ମୋ ମୁହଁକୁ ଚାହିଁ ରହିଥିଲେ । ମୁଁ ଲାଜରେ, ସଙ୍କୋଚରେ ତଳକୁ ମୁହଁକଲି ।

—କ'ଣ କହୁଛ କହିଲ ? —ନୂଆବୋଉ ପଚାରିଲେ ।

—କେଉଁ କଥା ?

—ବାହାଘର କଥା ।

—ଓ— ଏଇ କଥା ? —ଫୁସ୍— ।

ନାଇଁ—ନାଇଁ—କହ !

କ'ଣ କହିବି ?

ବାହା ହବଟି ?

ନା— ମୁଁ ବ୍ରହ୍ମଚାରୀ ରହିବି— ବଣକୁ ଚାଲିଯିବି— ବାବାଜୀ ହୋଇଯିବି ।

ନାଇ ଥଟ୍ଟା ନୁହେଁ— ସତ କହ । ବାପା ପରା ପଚାରିଛନ୍ତି !

ଆରେ କନିଆଁ କନିଆ କାହିଁ— କନିଆଁ ?

କନିଆଁ କ'ଣ ଅପୂର୍ବ ?

ସୁନାନାକୀ କନିଆଁ— ସୁନାନାକୀ ! ଆଉ ତମ ଭଉଣୀ ଭଳି କାଳୀ, ହୁଣ୍ଡୀ, ଟେରଚଣ୍ଡୀକି କିଏ ବାହାହବ ମ !

ନାଇଁ—ନାଇଁ— ତମ ଲାଗି ସତ ସତ ଗୋଟିଏ ଭଲ କନିଆଁ ହେଇଛି ।

...ଗୋଟିଏ ? ଜମା ? ଆରେ ଦଶଟା ପାଞ୍ଚଟା କରନା । ଭାବିଛ ପୋଷି ପାରିବିନାହିଁ, ନା ? ଖୁବ୍ ପାରିବି । ଦଶଟା କାହିଁକି, ପଚାଶଟା ପାରିବି ।

ନାଇଁ, ମିଛ ନୁହେଁ— !

ଆରେ ଯାଃ— ମୁଁ କଣ ମିଛ ବୋଲି କହୁଛି । —ତେବେ କନିଆଁଟା କାହା ପାଇଁ କରିଛ ଶୁଣେ— ମୋପାଇଁ —ନା, ତମ ପାଇଁ ? ଦୁହେଁ ଯାକ ହସିଲୁଁ ।

ହଁ ମୋପାଇଁ । ଯାଃ ଖାଲି ଫାଜିଲାମି । ସେ କହିଲେ ।

ରାଗିଲକି ? ଆଚ୍ଛା, ଆଉ ଫାଜିଲାମି କରିବିନାହିଁ । କାନ ମୋଡ଼ିହେଉଛି ।

ନାଇଁ— ନାଇଁ— ରାଗିବିନାହିଁ— ରାଗିବି କାହିଁକି ? ରାଗିବା କଥା ତ କିଛି ନାହିଁ । ତମେ କହ— ଫାଜିଲାମି କରନାହିଁ— ବାୟାଟା ପରା !

ଆଚ୍ଛା ଆଉ ଫାଜିଲାମି କରିବିନାହିଁ । ଭଲ ପିଲାଟିଏ ହେଇ ବସିଲି । ଏଥର କ'ଣ ପଚାରିବାର ଅଛି ପଚାର ।

ବାହା ହବ ତ ?

ନିଶ୍ଚୟ ହେବି— ଶହେବାର ହେବି । ଆରେ ପୁରୁଷ ପୁଅ— ବାହା ହେବିନାହିଁ ? କିନ୍ତୁ ନୂଆବୋଉ, ସାବଧାନ !

—କଉଥିପାଇଁ ?

—ଶତ୍ରୁ— ଜାଣି ଥା !

ଯାଃ, କ'ଣ ଯେ ତମେ କହ ! ଯା'ଟିଏ ଆସିବ— ସାନଭଉଣୀଟି ପରି— ଶତ୍ରୁ ଗୋଟାଏ କ'ଣ ମ ? ଏ ଗୋଟାଏ କଥା ?

ମୁଁ ଚାଲିଆସିଲି । ନୂଆବୋଉ ଗୁଆକାତି ଖଟ୍ ଖଟ୍ କଲେ; କିନ୍ତୁ ମୁଁ ବୁଝିପାରିଲି ନୂଆବୋଉ ଦିନଯାକ ଯେମିତି କ'ଣ ଗୋଟାଏ ଭାରି ବଡ଼ କଥା ଭାବୁଛନ୍ତି । ମୋତେ ଦେଖିଲେ ସେ ହସନ୍ତି— ଖୁସି ଗପ କରନ୍ତି— ଥଟ୍ଟାଲଗାନ୍ତି; କିନ୍ତୁ ମନେହୁଏ ସବୁ ଯେମିତି ଟଣାଓଟରା— ବାଧ୍ୟବାଧକତା ।

X X X X

ବାହା ହବାକୁ ମୋର ବୟସ ହୋଇଛି । ବାହା ହବା କଥା— କିନ୍ତୁ ତଥାପି ବାହାହେବା କଥାଟା କେମିତି ମନକୁ ଲାଗୁନାହିଁ । ମନେହେଉଛି— ବାହାହେବାର କଥା— ହେବି ।

ଏତେ ତରତର କାହିଁକି ? ଯେମିତି ମୋ ଆଗରେ ଅଗଣିତ ଦିନଗୁଡ଼ାକ ପଡ଼ିଛି—ଅସରନ୍ତି ଯୌବନ ଅଛି । ଏ ସମସ୍ତେ ସତେ କି ମୋ ବାହାଘରପାଇଁ ଅପେକ୍ଷା କରି ରହିଛନ୍ତି—ରହିବେ—ରହିଥିବେ ।

ମୁଁ ବୁଝିପାରେଁ, ମୋର ଯୌବନ ଅଛି, ସମ୍ପତ୍ତି ଅଛି, ଖାଇବାକୁ ଗଣ୍ଡେ ନିଶ୍ଚିନ୍ତରେ ମିଳିବ । ତଥାପି ବାହାହେବା କଥା ଶୁଣିଲେ ମନରେ ଗୋଟାଏ ଚେଙ୍କା ଲାଗିଗଲା ପରି ଜଣାଯାଏ ।

ଫୂର୍ତ୍ତି କରିବାକୁ ମନ ଧାଏଁ—ଫୂର୍ତ୍ତି କରେଁ—ଫାଜିଲାମି କରେଁ— ଥଟ୍ଟା— ଟାପରା ହସ ଖୁସି ଆମୋଦ ଆହ୍ଲାଦ ସବୁ ହୁଏ । ତା ହେଲେ ବି, ବାହାହୋଇ ଆମୋଦ କରିବାରେ ଯେଉଁ ପ୍ରଚ୍ଛନ୍ନ ଦାୟିତ୍ୱ ଅଛି, ସେଇ ଅଜ୍ଞାତ ଭୟର ଅନାହୂତ କଳ୍ପନାରେ ମୁଁ ବେଳେ ବେଳେ ବିବ୍ରତ ହୋଇପଡ଼େ ।

ଭାବୁଥିଲି, ବାହାହେଲେ ମୋର ଅଧିକା ହେବ କ'ଣ ? ମୋରି ବୋଲି ଅଧିକାର ଦାବି କରିବାପାଇଁ ଗୋଟିଏ ବଳକା ଜିନିଷ ମିଳିବ—ଏଇ ତ ? ନା— ଆଉ କିଛି ହେବ ? ମୋର ଆମୂଳଚୂଳ ପରିବର୍ତ୍ତନ ଘଟିବ ! ମୋର ଗୋଟାଏ ସ୍ୱାତନ୍ତ୍ର୍ୟ ମୁଁ ଅନୁଭବ କରିବି—ମୋର ସେହି ସ୍ୱତନ୍ତ୍ର ସ୍ଥିତିଟାକୁ ନେଇ ମୁଁ ସବୁବେଳେ ସଜାଗ ରହିବି । ଇତସ୍ତତଃ ମନଟା ହୁଏ ତ ପୁଣି କେନ୍ଦ୍ରସ୍ଥ ହେବ । ଫଳରେ ମୁଁ ସ୍ୱାର୍ଥପର ହୋଇଯିବିନାହିଁ ତ ? ମୋର ସ୍ତ୍ରୀ, ପୁଅ, ମୋର ଝିଅ...

ଦାଦା, ଗୋଟେ ପଇତା ! ବାବୁନି ଦଉଡ଼ିଆସି ମୋ ଗୋଡ଼କୁ କୁଣ୍ଢେଇପକାଇ ମୋ ମୁହଁକୁ ସତୃଷ୍ଣ ଆଖିରେ ଚାହିଁ କହିଲା— ଦାଦା, ଗୋଟେ ପଇତା ।

ଭାବିଲି— ସେ ସମ୍ବନ୍ଧ କ'ଣ ଇୟାଠାରୁ ଆହୁରି ନିଘନ ହେବ ? ମୋ ପିଲାଝିଲାମାନେ ମୋତେ ବାପା ବାପା ବୋଲି ଡାକି ଏମିତି ଅଳି କରିବେ ।

ସେ ଡାକ କ'ଣ ୟା'ଠାରୁ ବେଶି ମିଠା ଲାଗିବ ?

ବାବୁନିକି ମୁଁ କୁଣ୍ଢାଇପକାଇ ଗେଲ କଲି । ତାକୁ ଯେମିତି ନଚାଏ, ଖେଳାଏ, ଗଡ଼ାଏଁ, କୁତୁକୁତୁ ଦିଏଁ, ଓଲଟବାଜି କରେ, ସେମିତି କଲି । ମିଛରେ ତାକୁ ଆଖି ଦେଖାଇଲି— ମାରିଲି । ସେ କାନ୍ଦିଲା । ପୁଣି ତାକୁ କାଖେଇପକାଇଲି । ପଇସା ଦେଲି । ସେ ତୁନି ହେଲା । ମୁଁ ଚୁମା ଖାଇଲି । —ୟା'ଠାରୁ କ'ଣ ନିଜର ବୋଲି ଯେଉଁ ଛୁଆଟାର କଳ୍ପନା କରୁଛି, ସେ ବେଶି ସୁଖ ଦେବ ? ଛୁଆଙ୍କଠାରୁ ଯେଉଁ ନିରୀହ ନିଃସ୍ୱାର୍ଥ ଆନନ୍ଦ ପାଇବାର କଥା, ସେଟା କ'ଣ ବାବୁନିଠାରୁ ମୁଁ ଯାହା ପାଉଛି ତା ଯଥେଷ୍ଟ ନୁହେଁ ? ୟାଠାରୁ କ'ଣ ସେ ବେଶି ହେବ ? ନିଜର ବୋଲି ଯେଉଁଠି ବେଶି ଦାବି ରହିବ— ରହିବା ସମ୍ଭବ— ସେଟା ତ ସ୍ୱାର୍ଥର ସମ୍ବନ୍ଧ । ସେ ସ୍ନେହରେ ଏ ନିର୍ମଳତା ରହିବ କିମିତି ?

କିନ୍ତୁ ସ୍ନେହ ବୋଲି ଯେଉଁ ଜିନିଷ ସେଟା କ'ଣ ପ୍ରକୃତରେ ନିର୍ମଳ ? ବାବୁନିକି ମୁଁ ଏତେ ଭଲପାଏଁ— ଏତେ ସ୍ନେହକରେଁ—ସେଟା କ'ଣ ପ୍ରକୃତରେ ନିର୍ମଳ— ନିଃସ୍ୱାର୍ଥ ? ତାହହେଲେ ବୁଲା ଭାଟରା ଭିକମଗା ଛୁଆଙ୍କୁ ଡାକିଆଣି ମୁଁ ଭଲ ନ ପାଉଛି କିଆଁ ?

ବାବୁନି ମୋ କାଖରୁ ଓହ୍ଲାଇ ଦଉଡ଼ି ପଳେଇଲା ।

ଭାବିଲି—ଭଲପାଇବାଟା ଖାଲି ନିଜଲାଗି । ମଣିଷ ଭଲପାଏ, ନିଜର ସୁଖ ଲାଗି, ନିଜର ସ୍ୱାର୍ଥ ଲାଗି । ମଣିଷ ଭଲପାଏ, ସୁଖପାଏ, ସେ ଭଲପାଇବାରୁ ନିଜେ କିଛି ଭଲପାଏ ବୋଲି— ନିଜେ ସେଥିରୁ ସୁଖପାଏ ବୋଲି । ଯାହାକୁ ଭଲପାଏ— ଯାହାକୁ ସୁଖପାଏ, ତାର ସେଥିରେ କେତେ ଭଲ ମନ୍ଦ ସେ ବୁଝେନାହିଁ । ବାବୁନି ପଇସା ନେଇ ଚାଲିଗଲା— ତାର ଭଲ ହେବ କି ମନ୍ଦ ହେବ ସେ କଥା ମୁଁ ଭାବିଲିନାହିଁ । ମତେ ଭଲ ଲାଗିଲା ମୁଁ ଦେଲି । ତାର ଭଲ ହେବାଟାକୁ ଦେଖିଥିଲେ ମୋର ଭଲପାଇବାଟା ଠିକ୍ ଭଲପାଇବା ହୁଅନ୍ତାନାହିଁ । ସେଥିପାଇଁ ସ୍ୱାମୀଠାରୁ ମା'ପିଲାଙ୍କୁ ବେଶି ଭଲପାଏ— ତାମାନେ ପିଲାଙ୍କଠୁଁ ସେ ବେଶି ତାର ସୁଖ ଆଦାୟ କରିନିଏ ।

ସେଥିପାଇଁ ଭଲପାଇବାଟା ଅତି ନିଜର— ଅତି ଆପଣାର । ମଣିଷ ଦେହ ଭଳି ଅତି ଘେନାଘେନି ଭାବରେ ଜଡ଼ିତ । ବରଂ ଭଲପାଇବାଟା ଦେହର ଗୋଟାଏ ଅତୃପ୍ତ ଅଳି— ଅସନ୍ତୁଷ୍ଟ କ୍ଷୁଧା । ଭଲପାଇବାର ଆଧାରଟା ସେଥିପାଇଁ ଦେହର ନିକଟତର ହୁଏ, ଭଲପାଇବା ସେତେ ବଢ଼େ— ମଣିଷ ଭଲପାଇ ସେତେ ସୁଖପାଏ— ସେତେ ଆନନ୍ଦ ଉଠାଏ ।

X X X X

ଖାଇବସିଥିଲି । ନୂଆବୋଉ ଘିଅ ଆଣି ଦେଲେ । ଦେଇ ସେଠି ବସିଲେ । ଭାତ ଉପରେ ଗୋଟାଏ ମାଛି ବସିପଡ଼ିଲା । ସେ ହାତ ଅଇଁଠା କରି ସେଠୁ ଭାତ ଟିକିଏ କାଢ଼ି ତଳେ ପକେଇଦେଲେ । ସାଙ୍ଗେ ସାଙ୍ଗେ ଯାଇଁ ବିଞ୍ଚଣା ଖଣ୍ଡେ ଆଣି ମାଛି ଘଉଡ଼ାଇ ବସିଲେ । ଛେନା ତରକାରିଟା ଗରମ ଥାଏ— ଭାରି ଭଲଲାଗୁଥାଏ ।

ଆଉ ଟିକିଏ ଦେବି ? ସେ ମୋ ମନକଥା ଜାଣିଲାପରି ପଚାରିଲେ ।

ଅଛି ନା ଆଉ ? ମୁଁ ପଚାରିଲି ।

ହଁ ।

ତମପାଇଁ ସବୁ ରହିବ ତ ?

ଭଲା କଥା ! ତମେ ଆଗ ଖାଅ ! ଆମପାଇଁ ନହେଲେ ହେଉନାହିଁ ନା ?— ସେ ଉଠିଗଲେ । ସଙ୍ଗେ ସଙ୍ଗେ ସେ ତରକାରି ଆଣି ନିଜେ ପରଷିଲେ ।

ନୂଆବୋଉ, ତରକାରି କିଏ ରାନ୍ଧିଥିଲା ?— ମୁଁ ପଚାରିଲି ।

କାହିଁକି ? —ନୂଆବୋଉ କହିଲେ ।

ଏ କେଉଁ ପୂଝାରୀ ରାନ୍ଧଣା ନୁହେଁ ।

ମୁଁ ରାନ୍ଧିଥିଲି । ତମେ ପରା ଛେନା ତରକାରି ଖାଇବାକୁ ଭାରି ସୁଖ ପାଅ— ସେଥିପାଇଁ ।

ଛାତିଟା ମୋର କୁଣ୍ଢେମୋଟ ହୋଇଗଲା । ଟିକିଏ କାହିଁକି ଲାଜ ବି ଲାଗିଲା । ମୁଁ ତଳକୁ ମୁହଁପୋତିବା ପାଇଁ ଖାଇବାରେ ବ୍ୟସ୍ତ ଥିବାର ଆଯଥା ଅଭିନୟ କଲି ।

ମୁଁ ଭାବିଲି– ନିଜର ସ୍ତ୍ରୀ ହେଲେ କ'ଣ ସେ ଯା'ଠାରୁ ବେଶି ଯତ୍ନ ନେବ ? — ଯାଠାରୁ ବେଶି ସ୍ନେହ କରିବ ? ସେ କ'ଣ ଆହୁରି ଆପଣାର ହେବ ? ହେଲେ ବି, ସେ କ'ଣ ଏତିକି ଆନନ୍ଦ ଦେଇପାରିବ ?

ଅନେକ ବେଳ ଚୁପ୍ ରହିବା ପରେ ନୂଆବୋଉ ମୁହଁଖୋଲି କହିଲେ—ସେଠୁ ଚିଠି ଆସିଛି ।

କେଉଁଠୁ ?– ମୁଁ ପଚାରିଲି ।

କନିଆ ବାପଘରୁ ।

ଓ—ହଁ । କ'ଣ ଆସିଛି ?

ସେ କୋଷ୍ଠୀ ପଠେଇଛନ୍ତି ।

ହୁଁ ।

କୋଷ୍ଠୀ– ଏଇ ମାର୍ଗଶିରରେ – ପଡ଼ିଲେ ।

ମୁଁ କିଛି କହିଲିନାହିଁ । ଝୋଲଟା ଟିକିଏ ଜୋର୍‌ରେ ହାପୁଡ଼ିବାକୁ ଆରମ୍ଭ କଲି ।

କ'ଣ କହୁଛ ?

ଆଚ୍ଛା, ନୂଆବୋଉ !

କ'ଣ ?

ବାହା ନହେଲେ ଚଳେନାହିଁ ନା ?

କିମିତି ଚଳିବ ?

କାହିଁକି ?

ପୁରୁଷ ପୁଅ । ଘର କରିବ, ଦୁଆରକରିବ- ଛୁଆ ହେବେ, ପିଲା ହେବେ—

—ଯା'ର ସେ ସବୁ ଦରକାର ନଥିବ ?

ପୁଣି ଭଲ– ମନ୍ଦ– ହାନି– ଲାଭ– ଦିହପା !

ନୂଆବୋଉ, ମୋର କ'ଣ କେହି ନାହାନ୍ତି ଏସବୁ କରିବାପାଇଁ– ଏସବୁ ଦେଖିବାପାଇଁ– ବୁଝିବାପାଇଁ ? ମୁଁ ନୂଆବୋଉଙ୍କୁ ଚାହିଁଲି ।

ନୂଆବୋଉ ତଳକୁ ମୁହଁ କଲେ । ମୋ କଥାରେ ଯେଉଁ ବିକଳ ଆବେଦନ ଥିଲା, ସେ ଯେଉଁଠୁ ଆସିଥିଲା, ନୂଆବୋଉଙ୍କର ସେଇମିତି ଜାଗାରେ ସେ ଯାଇ ବାଜିଲା ଯେମିତି ! ଲଜ୍ଜା, ଆନନ୍ଦ ଆଉ ଆତ୍ମପ୍ରସାଦରେ ତାଙ୍କର ସୁନ୍ଦର ମୁହଁଟି ଆହୁରି ସମାନ ହୋଇଯାଉଥିଲା ପରି ଲାଗିଲା ମୋତେ ।

X X X X

କିନ୍ତୁ ବାପା କହିଲେ, ବାହାହେବାକୁ ହେବ ।

ନୂଆବୋଉଙ୍କ ଭିତରେ ଯାହା ଥାଉ, ସେ ବି କହିଲେ ବାହାହୁଅ ।

ଦେଈ ରାଗିଲା ।

ବନ୍ଧୁବାନ୍ଧବ ପ୍ରିୟାପ୍ରୀତି ସମସ୍ତେ ଜିଦ୍ ଧରି ବସିଲେ—ବାହାଘର ହବ । ବାହାଘର କଥା ପଡ଼ିଲେ, ନୂଆବୋଉ ପାଖରେ ଥିଲେ ମୁଁ ଖାଲି ତାଙ୍କୁଇ ଚାହେଁ । ସେ ପାଖରେ ନ

ଥିଲେ, ତାଙ୍କ ରୂପଟା ମୋ ଆଖି ଆଗରେ ନାଚେ । ମନରେ ସେଇ ଗୋଟିଏ ପ୍ରଶ୍ନ ଉଠେ– ନୂଆବୋଉ ପର ହେଇଯିବେନାହିଁ ତ ? ମନକୁ ମୁଁ ସାହସ ଦିଏଁ–ନା–ନା– ମୁଁ ତାଙ୍କୁ ପର ହେବାକୁ ଦେବିନାହିଁ । ନୂଆବୋଉ ମୋର– ସେ ମୋ ନୂଆବୋଉ !

କେତେ ଜାଗାରୁ ପ୍ରସ୍ତାବ ଆସିଲା– କେତେ ଜାତକ ପଡ଼ିଲା । କିଏ ମିଳିଲା, କିଏ ମିଳିଲାନାହିଁ । ଜାତକ ଭଲ ନମିଳିଲେ ସେଠି ବିବାହ ହେବନାହିଁ ବୋଲି ବାପା କହୁଥାନ୍ତି । ହଁ–ଜାତକ ଏତେ ଭଲ ପଡ଼ି ତ ଯା ହେଲା, ଜାତକକୁ କେଉଁ ବିଶ୍ୱାସ । ଭାଗ୍ୟ ! ଭାଗ୍ୟ । ପୁଣି ଯାବି କହୁଥାନ୍ତି । ନିଜେ ନିଜେ ପୁଣି ସେଇ ତାର ମୀମାଂସା କରନ୍ତି– ଯାହାହଉ ପଛେ, ସେଇ ତ ସବୁ, ଜାତକ ଭଲ ନମିଳିଲେ କରିବିନାହିଁ– ଗୋଟାଏ ବିଶ୍ୱାସ ତ !

ସବୁ ଜାତକ ସାଙ୍ଗରେ ଆସିଥିଲା ଲୀଳାର ଜାତକ । ମଧୁବାବୁ ମୋତେ ନିଜେ ମୁହଁରେ କିଛି କହିନଥିଲେ; କିନ୍ତୁ ବାପାଙ୍କ ପାଖକୁ ଚିଠି ଲେଖିଥିଲେ ମୋ'ରି ପ୍ରଶଂସା କରି । ଆଉ କୁଆଡ଼େ ଲେଖିଥିଲେ ଲୀଳା ପରି ଝିଅ ଏକା ମୋ ଲାଖି ।

ନୂଆବୋଉ ମୋତେ ଲୀଳା କଥା ପଚାରିଲେ– କେମିତି ହୁଅନ୍ତା– ଲୀଳାଟିକୁ ଆମର ବହୂ କଲେ ?

ମୁଁ କିଛି କହିଲିନାହିଁ । ସେ ଆପେ ଆପେ କହିଲେ– ଜାତକ ଭଲ ପଡ଼ିଛି ଯେ– ଖାଲି ସୁତ ସ୍ଥାନରେ ତାର ଟିକିଏ ଦୋଷ ଅଛି ବୋଲି ବାପା କହୁଛନ୍ତି । ହେଲେ, ତୁମର ତ ସେ ଦୋଷ ନାହିଁ– ସେଥିରେ କ'ଣ ଅଛି !

ମୁଁ ଉଁ କି ଚୁଁ କିଛି କହୁନଥାଏଁ ।

ସେ ପୁଣି କହିଲେ– ଆଉ ଗୋଟେ ଦି'ଟା ଖୁବ୍ ଭଲ ଜାଗାରୁ ପ୍ରସ୍ତାବ ଆସିଛି । ଜାତକ ବି ପଡ଼ିଛି । ଦେବେନେବେ ଖୁବ୍ ଭଲ । ତେବେ ଝିଅଙ୍କୁ ତ କେହି ଦେଖିନାହିଁ । ଆଜିକାଲି ତ ପୁଣି ନ ଦେଖିଲେ ଟୋକାଙ୍କର...ଆଚ୍ଛା ତମେ ଲୀଳାକୁ ଦେଖିଛ ?

ହଁ, ଦେଖିଥିଲି– ପିଲାଟିଏ ହେଇଥିଲା ।

କିମିତିକା– ଭଲ ପିଲାଟିଏ– ନୁହେଁ ?

ହଁ । ମୋ ପାଟିରୁ ବାହାରିପଡ଼ିଲା । ମୁଁ ହଠାତ୍ ଥମିଗଲି । ମୋର ମନେହେଲା, ନୂଆବୋଉ ଯେମିତି ମୋତେ ପଚାରିଲେ, 'ବାହା ହବ ?' ଆଉ ମୁଁ କହିଦେଲି 'ହଁ' । ମୁଁ ଅପ୍ରତିଭ ହୋଇପଡ଼ିଲି । ମୋତେ ଲାଜଲାଗିଲା ।

X X X X

ମୁଁ ଘରୁ ଆସିବାର ଦିନ କେଇଟା ପରେ ଚିଠି ପାଇଲି ନୂଆବୋଉଙ୍କଠୁଁ ଯେ ଲୀଳା ସହିତ ମୋର ବାହାଘର ଠିକ୍– ମଗୁଶିର ଦଶ ଦିନେ– ଏକାବେଳକେ ଲଗ୍ନ ବି ଧରା ସରିଛି ।

ହଠାତ୍ ମୋ ମନଟା କାହିଁକି ଚଞ୍ଚଳ ହୋଇଉଠିଲା । ମନେହେଲା, ବାହାଘର ପାଇଁ ଯେମିତି ମୁଁ ଆପେ ଆପେ ପ୍ରସ୍ତୁତ ହୋଇଗଲିଣି । ବାପା ଯଦି ଏତେବେଳେ ମନା ବି କରିଦିଅନ୍ତି, ତେବେ ତାକୁ ମାନିବା ଭଳି ଯେମିତି ମୋର ମନର ବଳ ନାହିଁ ।

ଦିନଗୁଡ଼ାକ ମୋତେ ଯେମିତି ଚଞ୍ଚଳ ଯିବାକୁ ନାହିଁ । ମଗୁଶିର ମାସ ଦଶଦିନ ଯେମିତି ଆହୁରି ବର୍ଷେ କି ଦି'ବର୍ଷ ଅଛି । ସମୟ ଯେମିତି ମୋ ଦିହ ହାତକୁ ବାନ୍ଧିପକେଇ ରଖିଛି । ମଗୁଶିର ମାସ ଦଶଦିନ ଦିନ ସେ ମୋତେ ଖୋଲିଦେବ ବୋଲି କହି ପଳେଇଛି କଉଠିକି ।

ମାର୍ଗଶିର ମାସ ଦଶ ଦିନ ଆଜିକି ରହିଲା ଦିନ ଦିନ କରି ମାସେ ତିନିଦିନ । ଗୋଟିଏ ଦିନ ଯିବା ମାନେ ଗୋଟିଏ ବଡ଼ ପ୍ରତିବନ୍ଧକ ମୁଁ ପାର ହେଇଯାଉଛି । ଆଉ ଯେତେ ନିକଟ ହେଇଆସୁଛି, ସେ ଦିନଗୁଡ଼ାକର ବାଧାଟା ଯେମିତି ବେଶି ଗୁରୁତର ହେବାରେ ଲାଗିଛି । ମନେହେଲା, ସମୟ ସେମିତି ଗୋଟାଏ ସବାଧ ଦୌଡ଼ରେ ମୋତେ ଦଉଡ଼େଇଛି– ଆଉ ମୁଁ ଦଉଡୁଛି ଏକାବେଳକେ ଅଣନିଶ୍ୱାସୀ ହୋଇ । କ୍ରମେ ଛାତିରୁ ଯେମିତି ଦମ୍ ସରିଆସୁଛି ।

ଲୀଳା ମୋର ଅନବରତ ମନେପଡ଼ିଲା । ସେହି ଛୋଟିଆ ଲୀଳାଟା ମୋ ବହିର ଅକ୍ଷର ହୋଇ ବିଶ୍ୱରୂପ ଭଳି ହଜାର ହଜାର ଲକ୍ଷ ଲକ୍ଷ ରୂପ ଧରି ବସିଲା ।

ମୋର ସେଇଟା ଫାଷ୍ଟ ଇୟର୍ । ମଧୁବାବୁ ବି.ଏ. ପଢୁଥାନ୍ତି–ଫୋର୍ଥ ଇୟର୍‌ରେ । ଏକା ରୁମ୍‌ରେ ଥାଉଁ । ଭାଇ ପରି ସ୍ନେହ କରନ୍ତି ସେ । ସେଥର ଦୋଳକୁ ସେ ମୋତେ ତାଙ୍କ ଗାଁକୁ ଡାକିନେଇଗଲେ । ଡାକି ନେଲେ ନାହିଁ– ଜୋର୍‌କରି ଧରି ନେଇଗଲେ କହିଲେ ଚଳେ ।

ଲୀଳାର ସେତେବେଳେ ବୟସ ଆଠ ନ' ହେବ । ଲୀଳା– ନାଁ ଲୀଳା– ପ୍ରକୃତରେ ଲୀଳା ସେ । ଲୀଳାୟିତ ଭଙ୍ଗୀ ତାର । ବାଳଗୁଡ଼ିକ ତରଙ୍ଗ ଭଳି ଲୀଳାୟିତ । ଆଖି ଯୋଡ଼ିକ ନୀଳ କଇଁ ଭଳି ଢୁଲୁ ଢୁଲୁ । ଦାନ୍ତଗୁଡ଼ିକ ମଲ୍ଲୀପାଖୁଡ଼ା ପରି ସଫା ଆଉ ସୁନ୍ଦର । ମୁହଁଟି ଠିକ୍ ଭଅଁର– ନୀଳ ଜଳ ଭିତରେ ଜହ୍ନ ଛାଇ ଭଳି ଚଞ୍ଚଳ ମଧୁର । ନିତି ନିତି ନୂଆ ନୂଆ ଲୀଳାରେ ଲୀଳା ତାର ପ୍ରତ୍ୟେକ କଥା, ପ୍ରତ୍ୟେକ ଭଙ୍ଗୀକୁ ସାବଲୀଳ ମାଧୁରୀମୟ କରି ମୋତେ ମୁଗ୍ଧ ବ୍ୟସ୍ତ କରି ରଖିଥାଏ ।

ମନେଅଛି, ଦିନେ ମୋତେ ଆସି ପଚାରିଲା– 'ବିଭୂତି ଭାଇ, ତମେ ପକ୍ଷିରାଜ ଘୋଡ଼ା ଚଢ଼ିଛ ?'

–ମୁଁ କହିଲି– ନାଁ ।

–ଦେଲେ ଚଢ଼ିପାରିବ ? ପଚାରିଲା ।

–ହଁ, ନିଶ୍ଚୟ । ଉତ୍ତରଦେଲି ।

–ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନିପୁର ବୁଲିଆସିପାରିବ ତା' ଉପରେ ଚଢ଼ି ।

ହୁଁ– ଗମ୍ଭୀର ହୋଇ କହିଲି ।

ସେଇଠୁଁ ସେ ଫଟକିନି ପ୍ରଶ୍ନ ବଦଳାଇ କହିଲା– ବିଭୂତିଭାଇ, ସ୍ୱର୍ଗ କେଉଁଠି ?

ମୁଁ ତାର ଚିବୁକ ଧରି ହଲାଇଦେଇ କହିଲି– ଏଇଠି ଏଇଠି ।

କେଉଁଠି କୁହ ନା– କେଉଁଠି– ଏଇ ଆକାଶ ଆରପାରିରେ ?

ମୁଁ କହିଲି– ହଁ, ହଁ, ସେଇଠି– ସେଇଠି ।

ଆମେ ସେଠିକି ଯାଇ ପାରିବା ?

ଆରେ ବାପ୍‌ରେ ବାପ୍ ! ସେଠିକି ମଣିଷ ଯାଆନ୍ତି ! ସେଟା ଦେବତାମାନଙ୍କ ରାଜ୍ୟ । ସେଠିକି ଗଲେ ଦେବତାମାନେ କ'ଣ ରଖିବେ ?

କଅଣ କରିବେ ?

ଏକଦମ୍ ଜୀବନ ନେଇନେବେ ।

ଯାଃ, ଦେବତାମାନେ କୁଆଡ଼େ ଆମକୁ ମାରିବେ ! ତମେ କିଛି ଜାଣନାହିଁ । ଦେବତା ମଣିଷର ଭଲ କରନ୍ତି– ମଣିଷକୁ ବର ଦିଅନ୍ତି– ମଣିଷକୁ ଦେବତା କରି ପାଖକୁ ନେଇଯାନ୍ତି । ସେ ଆମକୁ ମାରନ୍ତେ ଗୋଟେ କାହିଁକି ? ଯାଃ– କିଛି ଜାଣନାହିଁ ତମେ । ଇରେ ବିଭୂତିଭାଇ କିଛି ଜାଣନ୍ତିନାହିଁ ରେ । ଯା କହି ନାଚିଲା । ତାର ଝାମ୍ପୁରା ମୁଣ୍ଡ ବାଳଗୁଡ଼ିକ ନାଚିବାକୁ ଲାଗିଲା ।

ଜାଣିଛ– ଜାଣିଛ ? ସେ ପୁଣି ଆରମ୍ଭ କଲା, ଆଈ କହୁଥିଲେ ମୋ ଅଜା ଯେ ଦେବତା ଭଳି ମଣିଷ ଥିଲେ – ଦେବତାମାନେ ତାଙ୍କୁ ନେଇଗଲେ । ଆମେ ସେମିତି ଦେବତା ଭଳି ହେଲେ ଆମକୁ ବି ନେଇଯିବେ ।

ହଁ–ହଁ– ସେଇୟା ସେଇୟା । ଯା କହି ମୁଁ ତାକୁ ସେତିକିରେ ଚୁପ୍ କରିବାକୁ ଚେଷ୍ଟା କଲି । ସେ କିନ୍ତୁ ନଛାଡ଼େ ।

ସ୍ୱର୍ଗରେ କଅଣ ଥାଏ ? –ସେ ପୁଣି ପଚାରିଲା ।

ସ୍ୱର୍ଗରେ ଦେବତାମାନେ ଥାଆନ୍ତି– ତାଙ୍କ ରାଜା ଇନ୍ଦ୍ର ଥାଆନ୍ତି । ଇନ୍ଦ୍ରଙ୍କ ରାଣୀ ଶଚୀ ଥାଆନ୍ତି । ଅମୃତ ଥାଏ । ନନ୍ଦନ–

ଅମୃତ ଖାଇଲେ ପରା ମଣିଷ ମରେନାହିଁ ? ମୋ କଥା ନସରୁଣୁ ସେ ଏକାବେଳକେ ଅଥୟ ହୋଇ ପଚାରିଲା ।

–ନା, ମରେନାହିଁ ।

ଦେବତାମାନେ ଅମୃତ ଖାଆନ୍ତି ?

–ହଁ ।

ସେମାନେ ସବୁ ମରନ୍ତିନାହିଁ, ନା ?

–ନା ।

ଦେବତା ସବୁ ବେଶି ହୋଇଗଲେ ପୁଣି ଜାଗା କିମିତି ଧରିବ ସ୍ୱର୍ଗରେ ? ଏମିତି ପ୍ରଶ୍ନର ଜବାବ କ'ଣ ଦେବି ! କଥାଟାକୁ ଗୋଳେଇଦେବାପାଇଁ କହିଲି, ଆରେ ଶୁଣ୍– ସ୍ୱର୍ଗରେ କ'ଣ କ'ଣ ଥାଏ ଶୁଣୁଥିଲୁ ପରା ? –ଆଗ ଶୁଣିସାର ! ସ୍ୱର୍ଗରେ ନନ୍ଦନକାନନ ଥାଏ, ପାରିଜାତଫୁଲ ଥାଏ– ମନେରହୁଛି ନା ? –ପାରିଜାତଫୁଲ– ଭାରି ସୁନ୍ଦର, ଆଉ ଐରାବତ ହାତୀ, ଉଚ୍ଚୈଃଶ୍ରବା ଘୋଡ଼ା ।

ଆଉ ?

ଆଉ ? —ଆଉ ଅନେକ ଜିନିଷ । ଯାହା ଖୋଜିବ ସେଠି ତା' ପାଇବ ।

ବୋଉ କହୁଥିଲା— ସେଠି କୁଆଡ଼େ ମିଛ ନାହିଁ । ସତେ ନା ବିଭୂତିଭାଇ ? ସେଠି ସମସ୍ତେ ସତ କହନ୍ତି— କେହି କେବେ ଥରେ କି ଭୁଲରେ ବି ମିଛ କହନ୍ତିନାହିଁ । ଆଉ ଜାଣିଛ ? ସେଠି ଅନ୍ୟାୟ ନାହିଁ— ଅଧର୍ମ ନାହିଁ । ସେଠି ସମସ୍ତେ ସମସ୍ତଙ୍କୁ ଭଲପାଆନ୍ତି । କେହି କାହାରି ଉପରେ ଚିଡ଼ନ୍ତିନାହିଁ କି କେହି କାହାରିକି ହିଂସା କରନ୍ତିନାହିଁ । କେହି କାହାରିକି ମାରନ୍ତିନାହିଁ କି ଏମିତି ଇଃ—

ଚିମୁଟି ଦେଇ ପଳାଇଯାଇ ଖଣ୍ଡେ ଦୂରରେ ଠିଆହୋଇ କହିଲା— ଚିମୁଟନ୍ତି ନାହିଁ ।

ମୁଁ ଡାକିଲି— ଲୀଳା !

ସେ ମୁଣ୍ଡକୁ ହଲାଇ ପଚାରୁଥାଏ— ଯିବ—ଯିବ—ସ୍ୱର୍ଗକୁ ଯିବ ପକ୍ଷିରାଜ ଘୋଡ଼ାରେ ଚଢ଼ି ?

.ଲୀଳା ଶୁଣ୍ । ମୁଁ ପୁଣି ଡାକିଲି । ତା'ର ବୁଦ୍ଧି, ତାର ଚପଳତା ମୋତେ ଭାରି ଭଲ ଲାଗିଲା ।

ଉଁ-ହୁଁ—ଯିବିନାହିଁ— ମାରିବ ।

ନା— ମାରିବିନାହିଁ ।

ଇସ୍, ଭାରୀ ଚାଲାକ୍ । ଏମିତି କହିଲାଠୁଁ ପାଖକୁ ଗଲେ— ବାସ୍ !

ନା— ସତେ, କେଉଁ ମାରିବିନାହିଁ ।

ମୋ ରାଣ ପକାଇଲ ?

—ମୋ ରାଣ !

ନାଇଁ— ମୋ ରାଣ ।

—ହେଲା, ତୋ ରାଣ !

ବିଦ୍ୟା ଦୋହି ।

—ବିଦ୍ୟା ଦୋହି ।

ଆଖି ଛୁଅଁ ।

—ଆଖି ଛୁଁ ।

ମୋ ପାଖକୁ ଆସିଲା, ମୋ କୋଳ ଉପରେ ଆଉଜିପଡ଼ିଲା । ମୁଁ ତାର ଫୁରୁଫୁରୁ କଅଁରା ଅଲାବଲା କଅଁଳ ବାଳଗୁଡ଼ିକୁ ସାଉଁଳେଇଦେଲି ।

କହିଲା— ବିଭୂତିଭାଇ, ମୋତେ ଯଦି ସ୍ୱର୍ଗରୁ କେହି ଅମୃତ ଆଣି ଦିଅନ୍ତା...

—ଅମୃତ କ'ଣ ହେବରେ ?

ଆମେ୍ସବୁ ଖାଆନ୍ତେ— ଆଉ ଜମା ମରନ୍ତେନାହିଁ ।

ନ ଖାଇଲେ କ'ଣ ମରିଯିବା ?

ଆଉ !

ଯାଃ— ତୁଟା କିଛି ଜାଣୁନାହିଁ ।

ହଁ—ହଁ—ମିଛ ନୁହେଁ । ସେ ସାହୀର ପୁନିଆ ନାହାକ ପରା ହେଇଟି ସେଦିନ ମରିଯାଇଛି ! ଇଲୋ—ମାଲୋ—କୁଆଡ଼େ ଭୂତ ହୋଇ ଭାରି ଡରଉଛି ।

ଡରଉଛି ଯଦି ସେ ତ ଅଛି— ଆଉ ମଲା କେମିତି ?

ବାଆରେ, ସେ କ’ଣ ଆଉ ଅଛି —ତା ଭୂତ ଡରଉଛି ନା !

ତୋତେ ଏତେ କଥା କିଏ ଶିଖାଇଲାରେ ଲୀଳା ?

ବାଃ ସମସ୍ତେ କହନ୍ତି— ମୁଁ ଶୁଣିଛି ।

ହୁଁ—

ବିଭୂତିଭାଇ, ଆମେ ଅମୃତ ଆଣିମା । — କିମିତି ଆଣିମା ?

ଆଚ୍ଛା, ତୁ ଯଦି ସତ ଅମୃତ ପାଆନ୍ତୁ, କ’ଣ କରନ୍ତୁ ?

କହିବି— କହିବି— ?

ହୁଁ—

ଭାଇଙ୍କୁ ଦିଅନ୍ତି, ବାପାଙ୍କୁ ଦିଅନ୍ତି— ବୋଉକୁ, ଅପାକୁ । ଆଉ ଟିକିଏ ରଖିଥାନ୍ତି— ଯିଏ ମାଗନ୍ତା ଦିଅନ୍ତି । ଆଉ ତମକୁ ଟିକିଏ ବି ଦିଅନ୍ତିନାହିଁ— କହି ସତେ ଅମୃତ ଧରିଥିଲା ଭଳି ପଳେଇଯିବାକୁ ବସିଲା । ମୁଁ ହାତଟାକୁ ଧରିପକେଇଲି । ସେ ଆଉ ଯାଇପାରିଲା ନାହିଁ— ବିକଳ ହୋଇ କହିଲା— ‘ଉଁ—ଉଁ—ଛାଡ଼ ।’

ଆଉ ତୁ ଖାଆନ୍ତୁନାହିଁ ? —ମୁଁ ପଚାରିଲି ।

ହଁ—ହଁ, ମୁଁ ବି । ସେ କହିଲା ।

ଲୀଳାର ଏମିତି କେତେ ଲୀଳା । ଦିନ କେଇଟା ମହାଆନନ୍ଦରେ ଆଉ ମଉଜରେ କଟିଗଲା । ଚାଲିଆସିଲି । ମାଉସୀଙ୍କୁ ଦଣ୍ଡବତ କରି ଆସିଲି ।

ମନେଅଛି—ଲୀଳା ମୋତେ ଦଣ୍ଡବତ କଲା । ଜିଦି ଧରିଲା, ମୁଁ ଯିବି ବିଭୂତିଭାଇ ସାଙ୍ଗରେ ।

ଲୀଳାର ଆଈ ଲେଖା ହେବ, ଗୋଟିଏ ବୁଢ଼ୀ ଠିଆ ହୋଇଥିଲା ସେଠି, କହିଲା ବିଭୂତିଭାଇକି ବାହା ହ’ ଯେ ଶଙ୍ଖା ଶାଢ଼ି ପାନିକି ସବାରୀ ପଠେଇ ତୋତେ ନେଇଯିବ ।

ହେତ୍ ହେତ୍ ! ଭାକ୍ ଭାକ୍ !! କହି ଲୀଳା ତାକୁ ବାଡ଼େଇଲା ।

ଆମେ ଚାଲିଆସିଲୁଁ । ଚାଲିଆସିବାରେ, ଛାଡ଼ି ଆସିବାରେ, ଭୁଲି ଆସିବାରେ ବି ଗୋଟାଏ ମଉଜ ଥିଲା ।

ତା ପରେ— ତିନି ଚାରିବର୍ଷ ପରେ, ମଧୁବାବୁ ଯେଉଁ ବର୍ଷ ଲ’ ସାରି କଲେଜ ଛାଡ଼ିଲେ— ମୁଁ ଯାଇଥିଲି ପୁଣି—ଲୀଳାର ଦେଖାମିଳିନଥିଲା । କିନ୍ତୁ ସେ ଲୁଚିବାରେ ଆଢୁଆଳରେ, ଗୋପନରେ ଗୋଟାଏ ଆନନ୍ଦର ଉପଭୋଗ ଥିଲା ନିଶ୍ଚୟ ଥିଲା ।

ଆଉ ଆଜି ? ମୁଁ ଲୀଳାକୁ ଛାଡ଼ି ଆସିବାକୁ ଚାହେଁନା— ଲୁଚାଇ ରଖିବାକୁ ଚାହେଁ— ଦୂରରେ ଛାଡ଼ିବାକୁ ଚାହେଁନା— ମୁଁ ନିକଟରେ ଚାହେଁ— ଅତି ନିକଟରେ ଚୋହେଁ— ଛାତିରେ ଜଡ଼ାଇ ଧରିବାକୁ ଚାହେଁ ।

ସେଦିନ ମୋର ଗୋଟାଏ ଦେହ ଥିଲା ବୋଲି ବୁଝୁଥିଲି; କିନ୍ତୁ ସେ ଦେହର ଯେ ଏଡ଼େ ବଡ଼ କ୍ଷୁଧା– ଏଡ଼େ ଅତୃପ୍ତ ପିପାସା– ଆଜି ମୁଁ ପ୍ରତି ଶିରା ପ୍ରଶିରାରେ ଉପଲବ୍ଧି କରୁଛି । ମୋର ଦେହ ମୁଣ୍ଡ ଫାଟିପଡୁଛି ।

X X X X

ମୁଁ ଘରକୁ ଗଲି । ନିର୍ବନ୍ଧ ହେଲା । ସ୍ୱୀକାର ଆସିଲା । ସ୍ୱୀକାର ଗଲା । ଭାର ମିଠେଇ କେତ୍‌ରେ କ'ଣ । ମୁଁ ଘର ଭିତରକୁ ପଶିଯାଉଛି, ନୂଆବୋଉ ତେଣୁ ଚଟ୍‌କିନି ବାହାରିଆସି ମୋ ମୁହଁରେ ଏଡ଼େ ବଡ଼ ମିଠେଇଟାଏ ଭରିଦେଲେ । ମୁଁ ନା କଥା କହି ପାରୁଛି ନା ଖାଇପାରୁଛି । ନୂଆବୋଉ ଖାଲି ହସୁଥାନ୍ତି । ସେ ହସଟା ଯେ କିମିତି ମୁଁ ଠିକ୍ କହିପାରୁନାହିଁ । ତେବେ ଇମିତି ହସଟା ଆଗରୁ ମୁଁ କେଉଁଠି ଦେଖିନଥିଲି । ସେ ହସଟା ଯେମିତି ବଡ଼ ଶକ୍ତ । ବହୁତ କଷ୍ଟରେ ପାକୁଳେଇ ପାକୁଳେଇ ଅଧେ କି ତିନିପା' ଖାଇସାରିବା ପରେ କହିଲି–ଯାଃ– ଏମିତି ଏକାତାନେ ପୂରେଇ ଦିଅନ୍ତି ! ମୁହଁଟା ଭରତି ହୋଇଗଲା ।

ରାଗିଲ କି ? ଏ ସିନା ମୁହଁ ପୂରେଇ ଖାଇବା ହେଲା– ପୁଣି ମୁହଁ ଜାଣି, ମୁହଁ ଚିହ୍ନି ଖାଇବା ଯେତେବେଳେ ହେବ– ଆଉ କ'ଣ ଏ ଭଲଲାଗିବ ? ନୂଆବୋଉ ପୁଣି ହସିଲେ– ହସିହସିକା ପକେଇଲେ । ସେ ହସଟା ବଇଶାଖ ଝାଞ୍ଜି ଭଳିଆ ଫାଙ୍କା–ହାଲୁକା– ନିଆଁଶିଆ– ଗରମ !!

ମୁଁ ନୂଆବୋଉଙ୍କୁ ଡାକିଲି । ମୋ ଶୋଇବା ଖଟ ପାଖରେ ମୁଁ ଠିଆ ହେଲି । ନୂଆବୋଉଙ୍କୁ ମୋ ସାମନାରେ ଠିଆକରେଇଲି । ପଚାରିଲି, 'ନୂଆବୋଉ, ଏ ବିବାହରେ ତମେ ଖୁସି ନୁହଁ ।'

ସେ ପୁଣି ହସିଲେ– ସେହି ଶୁଖିଲା ନିର୍ମମ ହସ ।

ନା– ତମେ ହସିପାରିବନାହିଁ ! ମୁଁ ନୂଆବୋଉଙ୍କ କାନ୍ଧ ଧରି ଜୋର୍‌ରେ ଝାଙ୍କି ହଲାଇ ଦେଇ କହିଲି– ମୋତେ ଜବାବ ଦେବାକୁ ହେବ । ତମ ହଁ ନା ଉପରେ ମୋର ବିବାହ ହେବା ନହେବା ନିର୍ଭର କରେ ।

ସେ ଗମ୍ଭୀର ହେଇଗଲେ । ମୋତେ ଏଡ଼େ ଏଡ଼େ ଦୁଇଟା ଡାଗରା ଡାଗରା ଆଖିରେ ଚାହିଁଲେ । ସେ ଆଖି ତରଳି ପଡ଼ିଲା ।

ମୁଁ ପୁଣି ଡାକିଲି– ନୂଆବୋଉ, ନାଇଁ, ତମେ ମୁହଁଖୋଲି କହ । ମୋ ବାହା ହେବା ତମେ ଚାହଁନା ?

ନା–

ନୂଆବୋଉ !

ନୂଆବୋଉ ସେଠି ନଥିଲେ । ମୁଁ ଖାଲି ମନରେ ନୂଆବୋଉ ଗଢ଼ି ଆଗରେ ଠିଆ କରିଥିଲି । କଳ୍ପନାର ନୂଆବୋଉ 'ନା' କହି ଚାଲିଗଲେ । ମୁଁ ଫେରିଆସିବାକୁ ଡାକିଲି– ସେ 'ନା'ଟାକୁ ଫେରାଇ ନେବାକୁ ଅନୁରୋଧ କରିଥାନ୍ତି । ସେ ଫେରିଲେ ନାହିଁ ।

କଳ୍ପନାର ନୂଆବୋଉ ଆଉ ଜୀବନ୍ତ ନୂଆବୋଉ ଭିତରେ କ'ଣ ଫରକ୍ ଅଛି ? ଦୁହେଁ କ'ଣ ଏକାବେଳକେ ଅଲଗା ଅଲଗା ?

X X X X

ବାହାଘର । କାଲି ବାହା, ଆଜି ମଙ୍ଗନ । ନୂଆବୋଉ ଭାରି ବ୍ୟସ୍ତ । ଚରଚର ନରପର ହେଉଥାନ୍ତି । ଦାନ ଖଇରାତ୍ ସବୁ ଚାଲିଥାଏ । ହୁଇପରି କାମ କରୁଥାନ୍ତି । ଭିତରଟା ଭାରି ଥିଲେ ଡଙ୍ଗା ଯେମିତି ସୁରୁଖୁରୁରେ ଚାଲିଥାଏ, ନୂଆବୋଉ ସେମିତି ନିଥକା ନିଦକା ହୋଇ ଏକାରାହାରେ କାମ କରିଯାଉଥାନ୍ତି ।

ମଙ୍ଗୁଳି ହେବି । ସାତ ଅହିଏ ଆସିଲେ । ଦେଖିଲି ନୂଆବୋଉ ବାଦ୍ ପଡ଼ିଯାଇଛନ୍ତି । ନୂଆବୋଉଙ୍କୁ ଖୋଜିଲି । ଚାରିଆଡ଼କୁ ଚାହିଁଲି– ନୂଆବୋଉ ନାହାନ୍ତି ।

ନୂଆବୋଉ ନାହାନ୍ତି– ନୂଆବୋଉ ଆସିନାହାନ୍ତି– ନୂଆବୋଉ କେଉଁଠି ବସି କାନ୍ଦୁଛନ୍ତି– ନାଇଁ, ମୁଁ ମଙ୍ଗୁଳି ହେବିନାହିଁ– ନାଇଁ, ମୁଁ ବାହାହେବିନାହିଁ ।

ହୁଳହୁଳି ପଡ଼ିଲା । ଜଣେ ଡାକପକାଇଲା– ଶଙ୍ଖ-ଶଙ୍ଖ । ସାତ ଅହିଏ ମୋ ହିହରେ ହଳଦୀ ବୋଳିଦେଲେ । ମୁଁ ଚିତ୍କାରକରି ଡାକିଲି– 'ନୂଆବୋଉ' ! ସେ ଡାକ ହୁଳହୁଳିର ଘଡ଼ଘଡ଼ି ଭିତରେ ଲୁଚିଗଲା । ମୁଁ ପୁଣିଥରେ ଡାକିଲି– 'ନୂଆବୋଉ !'

ନୂଆବୋଉ ଶଙ୍ଖଟାକୁ ବଜାଉ ବଜାଉ ଘରଆଡୁ ବାହାରିଆସିଲେ– ବ୍ୟସ୍ତ ଚଞ୍ଚଳ ହୋଇ । ଶଙ୍ଖଟା ଫୁଙ୍କିବାରେ ତାଙ୍କ ମୁହଁଟା ଫୁଲି ଉଠିଥାଏ । ଆଖି ଦୁଇଟା ପତା ଉପରକୁ ଯେମିତି ବାହାରିପଡ଼ିଥାଏ– ଗୋଟିପଣେ ନାଲ୍ । କି ଭୀଷଣ ! କି ବିକଟ !! ମୁଁ ଆଖି ବନ୍ଦକରିଦେଲି ।

X X X X

ବାହାଘରର ତୃତୀୟ ଦିନ ଆମେ ଆସି ଘରେ ପହଞ୍ଚିଲୁ । ସେଦିନ ମଧୁଶଯ୍ୟା ।

ଲୀଳା– ସେଇ ଛୋଟିଆ ଲୀଳାଟି । ସେମିତି ସରଳ, ସେଇପରି ଟଳୁଟଳୁ ଆଉ ସେଇଭଳି ଗୁଲୁଗୁଲୁ ସେ ନାହିଁ ସତେ !

ଲୀଳାକୁ ପାଖକୁ ଡାକିଲି । ଗୋଟିଏ କୋଣରେ ଖଣ୍ଡେ ମସିଣା ଉପରେ ସେ ବସିଥାଏ । ଜବ୍‌ବର ଓଢ଼ଣା ଟାଣି ପକ୍‌କା ବୋହୂଟିଏ ସାଜି ବସିଥାଏ ।

ଲୀଳା !

ସେ ଶୁଣିଲାନାହିଁ ।

ପାଖକୁ ଯାଇ ତା ମୁଣ୍ଡ ହଲାଇଲି ।

ତଥାପି ନା ।

ତା' ପିଠିରେ ହାତରଖି ଜୋର୍‌ରେ ହଲାଇଦେଇ ଡାକିଲି– 'ଲୀଳା, ଲୀଳାମ' !

ସେମିତି ନୀରବ ।

ତାର ଦୁଇ ହାତକୁ ଧରି ଟେକି ଠିଆ କରେଇଦେଲି । ସେ ପଡ଼ିଗଲାପରି ହେଲା । ମୁଁ ତାକୁ ମୋ ଛାତିଉପରେ ଆଶ୍ରୟ ଦେଇ ଦୁଇବାହୁରେ ତାର ଅଙ୍ଗଯଷ୍ଟିକୁ ବେଢ଼ି ରଖିଲି– ପଲଙ୍କ ପାଖକୁ ଧରି ନେଇଗଲି ।

ଲୀଳାର ଓଢ଼ଣା ଟେକିଦେଲି ।

ଏ ତ ସେ ଲୀଳା ନୁହେଁ– ଆଶ୍ଚର୍ଯ୍ୟ !

ଲୀଳା, ମୁଁ ଡାକିଲି । ସେ ଶୁଣିଲାନାହିଁ । ପୁଣି ଓଢ଼ଣା ଟାଣିବାକୁ ଯତ୍ନ କରୁଥିଲା– ପାରିଲାନାହିଁ । ତାର ଲାଜଲିପା ମୁହଁଟି କେଡ଼େ ଚୋରା ଦିଶୁଥାଏ । ନିବିଡ଼ରେ ଭିଡ଼ିଧରି ମୁଁ ତାର କପାଳ ପାଖକୁ ମୁହଁ ନେବାର ପ୍ରଲୋଭନ ଏଡ଼ିପାରିଲିନାହିଁ ।

କିନ୍ତୁ ସେଠି ଲୀଳା ନଥିଲା । ଶଙ୍ଖ ଫୁଙ୍କିବା ବେଳର ନୂଆବୋଉଙ୍କର ସେଇ ଡିମା ଡିମା ଆଖି, ସେଇ ଫୁଲିଲା ମୁହଁ, ସେଇ ରକତ ଉକୁଟା ରୂପଟା, ଗୋଟାପଣେ– ଲୀଳା ଆଉ ମୋ ଭିତରେ ଯେଉଁ ବ୍ୟବଧାନ ଟିକକ ଥିଲା– ସେଇଠି ଉହାଡ଼ କରି ରହିଥିଲା । ମୁଁ କାଠ ହେଇଗଲି । ମୋ ମୁଣ୍ଡ ଘୋଳେଇ ହୋଇ ଆସୁଥିଲା, ଦେହ ଫାଟିପଡୁଥିଲା । ମୁଁ ନିଷ୍ଠୁର ଭାବରେ ଲୀଳାକୁ ଜାକିଆଣି ଗୋଟିଏ ସଭୟ ଅଥଚ ସଜୋର ଚୁମ୍ବନ ଦେଲି ।

X X X X

ସେଦିନ ଚଉଠୀ । ଜଉ କଉଡ଼ି ଖେଳ ସରିଲା । ମୁହଁ ଚୁହାଁ ହେବ । ମୋର ଉଠି ଆସିବାର କଥା । ସମସ୍ତେ କହିଲେ ଆଗ ଘରର ଜଣେ କେହି ଆପଣାର ଲୋକ ମୁହଁ ଚୁହାଁ ଦେଲେ ତାପରେ ଯାଇ ଆଉ ସମସ୍ତେ ଦେବେ । ମୁଁ ଉଠି ଠିଆହେଲି । ନୂଆବୋଉ କହିଲେ– ଟିକିଏ ରହ ।

ମୁଁ ରହିଲି । ନୂଆବୋଉ ତାଙ୍କ କାନିତଳୁ ହାତୀଦାନ୍ତର ଫରୁଆ କାଢ଼ିଲେ– ସେଇ ଫରୁଆ । ମୋ ଦେହ ଥରିଉଠିଲା । ନୂଆବୋଉ ମୋ ଗୋଡ଼ରେ ତାକୁ ଛୁଇଁଦେଲେ । ତା'ପରେ ଫରୁଆଟିକି ନେଇ ଲୀଳା ମୁଣ୍ଡରେ ମାରିଲେ ।

ମୁଁ ରହିପାରିଲିନାହିଁ । ମୋ ଗୋଡ଼ ଥରୁଥାଏ । ମୁଁ ଚାଲିଆସିଲି । ଦୁଆର ସେ ପାଖରୁ ମୋତେ ଶୁଭୁଥିଲା, ନୂଆବୋଉ କହୁଥିଲେ– 'ଅହ୍ୟରାଣୀ ହେଇଥାଅ ।'

X X X X

ମୁଁ ଭାତ ଖାଇବାକୁ ଗଲି । ନୂଆବୋଉ ନଥିଲେ ।

ନୂଆବୋଉ ? ପଚାରିଲି–

ଭିକାରି ଚଟ୍‌କିନା ଉତ୍ତରଦେଲା– 'ଜର' ।

ଖାଇସାରି ନୂଆବୋଉଙ୍କ ପାଖକୁ ଗଲି । ନୂଆବୋଉ ଆଖି ବୁଜିଥିଲେ । ମୁଁ କପାଳରେ ହାତ ଦେଲି– ଉଷୁମ୍ ।

କିଏ, ବିଭୂତି ?

ନୂଆବୋଉ, ତମକୁ ଜର ହେଲା ?

ନାଇଁ– କିଛିନାହିଁ– ମୁଣ୍ଡଟା ଟିକିଏ ଡେଉଁଛି ।

ଖାଲି ଖଟି ଖଟି ଏତକ କିଣିଛ ।

ଆଉ କିଏ କରନ୍ତା ? କିଏ ଅଛି ?

କାହିଁକି– ତମେ ଏଣିକି ଲୀଳାକୁ କାମ କରାଅ ।

ପିଲାଟା । ନୂଆବୋଉ ହସିଲେ ।

କୋଢ଼ି ହୋଇଯିବ ଯେ !

ଆଚ୍ଛା ହଉ– ଏଣିକି କରେଇବି– ତମେ ଯା', ଶୋଇବ । ରାତି ଢେର୍ ହେଲାଣି ।

ମୁଁ ଚାଲିଆସିଲି । ପଛରେ ଭାବିଲି– ନୂଆବୋଉଙ୍କ ଦେହ ଖରାପ– ଆଉ ଟିକିଏ ବସିଥାଆନ୍ତି କି ! କିନ୍ତୁ ଲୀଳାର ଆକର୍ଷଣ ମୋତେ ମୋ ଅଜଣାରେ ଟାଣିନେଇ ଆସିଲା ।

ଲୀଳା ମୋ ଛାତି ଉପରେ– ତାର କେଶର ବାସ ମୋ ନାକ ପାଖରେ କ'ଣ ଖୋଜିବୁଲୁଥାଏ ।

ଲୀଳା ମୋର ଖୁବ୍ ନିକଟରେ । ତାର ଗରଳ-ଢଳା ଡୋଳା ମୋତେ କ'ଣ ପଚାରିବ ପଚାରିବ ବୋଲି ହେଉଥାଏ ।

ଲୀଳା ମୋର ଅତି ପାଖରେ । ତାର ମହୁନିଗିଡ଼ା ଓଠ କ'ଣ ଯେମିତି ମାଗିବ ବୋଲି ଆକୁଳ ହୋଇ ଚାହିଁରହିଥାଏ ।

ନୂଆବୋଉ ସେଠି ନଥିଲେ ।

ନୂଆବୋଉ ମୋଠୁଁ ଢେର୍ ଦୂରରେ । ତାଙ୍କର ସେ ନୁଖୁରା ବାଳଗୁଡ଼ିକର ନିର୍ମମ ଚିତ୍ର ମୋତେ ଆଉ ପୁରୁଣା କଥାକୁ ମନେପକାଇଦିଏନାହିଁ ।

ନୂଆବୋଉ ମୋ ପାଖରୁ ଘୁଞ୍ଚି ଯାଇଛନ୍ତି । ତାଙ୍କ ସଜଳ ଆଖିର ଦାରୁଣ କଥା ଶୁଣିବାପାଇଁ ମୁଁ ଆଉ ଧୈର୍ଯ୍ୟ ଦେଖାଇପାରିଲିନାହିଁ ।

ନୂଆବୋଉ ମୁଁ ବହୁତ ଛଡ଼ାଛଡ଼ି । ତାଙ୍କର ସେ ଶୁଖିଲା ହସ ଦେଖିଲେ ମୋର ସରସ ଜୀବନର ମଧୁର ସୁଖସ୍ୱପ୍ନ ଭାଙ୍ଗିଯିବ ବୋଲି ଭୟ କଲି ।

ଲୀଳାର ଦେହ–ମୋର ଦେହ । ମୋ ଦେହର ବୁଭୁକ୍ଷା–ଲୀଳା ଦେହର ମିଠା ତରଳ ରକ୍ତ, କଅଁଳ ରୋମ ମାଂସକୁ ଆହ୍ୱାନ କରୁଛି ଯେପରି । ସେଠି ନୂଆବୋଉଙ୍କର ସ୍ଥାନ ନାହିଁ– ନୂଆବୋଉଙ୍କର ସ୍ଥାନ ଥାଇପାରେନା । ଏହି ଆକର୍ଷଣ ଭିତରେ, ଏହି ଅତି ପ୍ରାକୃତିକ– ଅତି ଦୈହିକ–ସ୍ୱାଭାବିକ ସତ୍ୟ ଆଉ ମୌଳିକ ସମ୍ବନ୍ଧ ଭିତରେ ଯଦି ନୂଆବୋଉ ଆସି ଠିଆହୁଅନ୍ତି, ତେବେ ମୁଁ ତାଙ୍କୁ ଧକ୍କା ମାରି ତଡ଼ିଦେବି । କହିବି– ନୂଆବୋଉ ! ଏଠି ତମର ସ୍ଥାନନାହିଁ– ତମର ସେ ସ୍ପର୍ଦ୍ଧା ରଖିବା ଅନ୍ୟାୟ । ଦେହର ଏ ଡାକ– ରକ୍ତମାଂସର ଏ କ୍ଷୁଧା– ଯାକୁ ବାଧାଦେବ କିଏ ? ନୂଆବୋଉ ! ତମେଇ ତ ଶିଖେଇଛ ଏ କଥା ! କ'ଣ ଭୁଲିଗଲ ! କିମିତି ଭୁଲିଲ ? କାହିଁକି ଭୁଲିଲ ?

---

# ମନ

ଏଇ ବାହାଘର, ଏଡ଼େ ବଡ଼ ପରା ଦିନେ, ସମସ୍ତେ ଯେତେବେଳେ ହସି ଖେଳି ନାଚି ଗାଇ ଧାଇଁ ବୁଲୁଛନ୍ତି, ସେତେବେଳେ ମୁଁ କାହିଁକି ସେଇ ସମସ୍ତଙ୍କ ସାଥିରେ ସମାନ ବେଗରେ ଗୋଡ଼ପକେଇ ଚାଲିପାରୁନାହିଁ, ମୋ ତାଳ କାହିଁକି ସମସ୍ତଙ୍କ ସାଙ୍ଗରେ ବେତାଳ ହୋଇଯାଇଛି– କାହାରି ସାଙ୍ଗରେ ମିଳୁନାହିଁ ? ମୁଁ କିଛି ବୁଝିପାରେନାହିଁ । ମନରେ ଗୋଟାଏ ଅସୁନ୍ଦର ସନ୍ଦେହ କେଉଁ କୋଣ ଫାଙ୍କରୁ ଉଙ୍କିମାରିଦେଇଯାଏ । ଏଡ଼େ ବଡ଼ ଅସନା ସନ୍ଦେହକୁ ମୁଁ ମୁହଁ ଦିଏନାହିଁ । ଅଳିଆ ଜିନିଷଟାକୁ ଓଳେଇ ଏକାଠି କଲାବେଳେ ଆଉ କେତେ ଅଳିଆ ଯେମିତି ଆପେ ଆପେ ଗୋଟେଇ ହୋଇ ଆସେ, ମଣିଷ ଥକା ହେଇ ଭାବେ, ଏସବୁ ମୋ'ରି ଭିତରେ ଥିଲା ନା ! ଆଶ୍ଚର୍ଯ୍ୟ ହୁଏ;– ସେମିତି– ଠିକ୍ ସେଇମିତି ମନରୁ ଗୋଟାଏ କଥା କାଢ଼ି ଫିଙ୍ଗିଦେବାପାଇଁ ବାହାରିବା ବେଳକୁ ଆଉ ପାଞ୍ଚଟା କଥା ତା' ସାଥିରେ ଜମା ହେଇଯାଏ ପୁଣି; କିନ୍ତୁ ଏଇ ସନ୍ଦେହୀ ମନଟା ଉପରେ ଗୋଟାଏ ଢାଙ୍କୁଣୀ ଦେଇ ମୁଁ କାମରେ ଲାଗିଥାଏ । ମୋ ଦେହଟା ଅସମ୍ଭବ ରକମର ଚଞ୍ଚଳ ହେଇଉଠୁଥାଏ; କିନ୍ତୁ ବାହାରଟାକୁ ଯେତେ ଜୋର୍‌ରେ ଦଉଡ଼ଉଥାଏଁ– ଭିତରଟା ମୋର ଅବଶ ହୋଇପଡୁଥାଏ, ଠିକ୍ ସେତିକି, କି ତାଠୁଁ ବେଶି ଜୋର୍‌ରେ ।

ବାହାଘର, ବିଭୂତିର ବାହାଘର, କି ଆନନ୍ଦର କଥା– ଭାଗ୍ୟରେ ଥିଲା, ଦେଖିଲି । ସେ ଯଦି ଥାଆନ୍ତେ, କେତେ ଫୁଲିପଡୁଥାନ୍ତେ ।

ସେ ଯଦି ଥାଆନ୍ତେ– ସେ ଯଦି ଥାଆନ୍ତେ–

ଏଇ କଥାଟା ଦୋହରେଇ ତେହେରେଇ ହେଲା ମନ ଭିତରେ ।

ସେ ଯଦି ଥାଆନ୍ତେ– କ'ଣ ହେଇଥାନ୍ତା ଅଧିକା ?

ନିଜକୁ ନିଜେ ପଚାରିଲେ– 'ସେ ଯଦି ଥାଆନ୍ତେ ଏ ବାହାଘରଟା କ'ଣ ଆଉ ରକମେ ହୋଇଥାଆନ୍ତା ?'

'ହଁ, ଆଉ ରକମେ ହୋଇଥାନ୍ତା'– ମୁଁ ନିଜକୁ ନିଜେ ଉତ୍ତରଦେଲି ।

ସେ ଯଦି ଥାଆନ୍ତେ, କିରସ୍ତାନ ଘରପରି ମୁଦି ବଦଳ ହୋଇନଥାଆନ୍ତା କି ମୁସଲମାନ୍ ଘରପରି ଅଇଁଠାଚଟା ହେଇନଥାନ୍ତା– ଏଇମିତି ଠାକୁର ପରି ଫୁଲମାଳ ଦେଇ ପ୍ରତିମା ସଜାଇ ବାଜା ବଜାଇ ହାଟ ବସାଇ ବାହାଘର ହୋଇଥାନ୍ତା ଯେ, ମାତ୍ର ଯେତେହେଲେ ବି ତଥାପି ଯେମିତି ଆଉ ଅଧିକା ଗୋଟାଏ କ'ଣ ନା କ'ଣ ହେଇଥାଆନ୍ତା ।

ଏ ବାହାଘରଟା ଯେମିତି ବାହାଘର ପରି ହେଲାନାହିଁ । ରୋଶଣି ହେଲା, ବାଣ ଫୁଟିଲା, ନହବତ ବସିଲା, ବାଜା ବାଜିଲା, ନାଟ ହେଲା, ତାମସା ହେଲା, ଲୋକେ ଅଇଲେ ଗଲେ, ଖାଇଲେ ପିଇଲେ, ବହୂ ଆଇଲା, ଯଉତୁକ ଆସିଲା, ଲୁଗାପଟା ଦେ'ଣ

ନେ'ଣ ଭାର ବେଭାର କାହିଁ କେଉଁଥିରେ ତ ଅଭାବନାହିଁ । ତଥାପି କାହିଁକି ବାହାଘରଟା ଅଲଗା ଅଲଗା ଲାଗୁଥାଏ । ଖାଲି ସେଇକଥାଟା ମନେହେଉଥାଏ 'ସେ ଯଦି ଥାଆନ୍ତେ' ।

ଆଜି ଯଦି ସେ ଥାଆନ୍ତେ— ଆଉ କାହାରି ନହେଉ— ମୋତେ ସେ ଆଉ ଗୋଟା ରକମର ଲାଗିଥାଆନ୍ତା । ସେକଥା ମୋ ଛଡ଼ା ଆଉ କେହି ତ ବୁଝିପାରିବନାହଁ—କହିଲେ ବି ନୁହେଁ ।

ବିଭୂତି ବିଭା ହେଲେ । ନୂଆ ଯା'ଟିଏ ଆସିଲା । ମୋର ତାକୁ ମୁହଁଚହାଁ ଦେବାର କଥା । ମୁଁ ଗହଣା ବାକ୍‌ସା କାଢ଼ିଲି । ଗୋଟିଏ ସୁନାର କାନଫୁଲ ଭାରି ସୁନ୍ଦର—ଦାମିକା ଦେବାକୁ ମନ ଥିଲା; କିନ୍ତୁ ମୁଁ ଯେତେଥର ତାକୁ ଆଣିବାକୁ ଗଲି, ମୋର ମନେପଡ଼ିଲା ସେଇ ଫରୁଆ—ହାତୀଦାନ୍ତର ଫରୁଆ— ଯାହାକୁ ବିଭୂତି ମୋତେ ଦେଇଥିଲେ—ତା'ରି କଥା । କାନଫୁଲ ଦେବାକୁ ହେଲେ ପରେ ଦେବି— ଏ ଫରୁଆଟିକୁ ଦେଖେଁ । ଦେଖିଲି, ମନ୍ଦ ନୁହେଁ । ଭାବିଲି— ଆଉ କାହିଁକି— ପୋଡ଼ିଗଲା ତୁଣରେ ଆଉ କି ସୁଖ କି ସୁଆଦ ?

କିନ୍ତୁ ବିଭୂତି କାଳେ କିଛି ମନରେ ଭାବିବେ ! ମୋର ଟିକିଏ ଡର ହେଲା । ପୁଣି ଭାବିଲି ଏଇମିତି ଡରି ଡରି, ଜଗି ଜଗି, ସତଟାକୁ ଘୋଡ଼ାଇ ରଖି କେତେଦିନ ଚଳିପାରିବି ! ମୋର ନିଜର ବଡ଼ିମାରେ ବାଧାପଡ଼ିଲା ପରି ମୋତେ ବଡ଼ ବାଧିଲା । ଠିକ୍ କଲି, ବିଭୂତି ଯାହା ଭାବିବାର ଭାବନ୍ତୁ ପଛେ ମୁଁ ଏ ଫରୁଆ ତାଙ୍କୁ ଫେରେଇଦେବି । ଆଉ ମୋର ବା ହବ କ'ଣ ଏ ? ସେ ମୋତେ ଯାହା ଦେଇଥିଲେ, ସେ ଯେବେ ମୋତେ ନ ସହିଲା, ମୁଁ ତାକୁ ରଖି କ'ଣ କରିବି ? ତାଙ୍କ ଦିଆ ଦରବରେ ମୋର କି ଦାବି ଅଛି ? ମୁଁ ତାଙ୍କର କିଏ— ମୋର ତାଙ୍କର କି ସମ୍ବନ୍ଧ— ତାଙ୍କର ମୋର ସାଂସାରିକ ସମ୍ପର୍କ, ପାରିବାରିକ ବନ୍ଧନରେ ମୂଲ୍ୟ ବା କ'ଣ ?

ଦୁଇଟା ଅଲଗା ବାଟ— ଦୁଇଆଡ଼କୁ ପଡ଼ିଛି— ଗୋଟେ ଏଣିକି ତ ଗୋଟେ ତେଣିକି । ଦୁହେଁ ଦୁହିଁଙ୍କୁ ପଛ କରିଛୁ । ଦିହେଁ ଦୁଇ ଦିଗରେ ଗତି କରୁଛୁ । ଆଉ କେଭେଁ ଦେଖା ହେବନାହିଁ— ଭେଟ ହେବନାହିଁ । ଆଉ କାହିଁକି ? ଯିଏ ଯାହାର ଯାହା ଧାରିଛି, ସେ ଯିବା ଆଗରୁ ଶୁଝଟା କରିଦେଇ ଯିବା ଉଚିତ— ସବୁ ଛିଡ଼ାଇଦେଇ ଯିବା ଉଚିତ— ହିସାବ କିତାବ ନିକାଶ କରିଯିବା ଭଲ ।

X X X X

ବାପା ଆସି କହିଲେ— ବହୂ, ଏ ଯଉତୁକ ବାସନଗୁଡ଼ିକ ରଖିଦିଅ । ବାହାରେ ପଡ଼ିଛି । କିଏ ନେଇନାଇ ଯିବ ।

—କେଉଁଠି ରଖିବି ?

ମୁଁ ପଚାରିଦେଇ ଚମକିପଡ଼ିଲି । ମୁଁ କିଛି ଭାବିନଥିଲି ମୋ ମୁହଁରୁ ବାହାରିପଡ଼ିଲା । ମୁଁ କ'ଣ କହିଦେଲି ? ଡରିଗଲି । ମୋତେ ହଠାତ୍ ବୁଦ୍ଧି ଦିଶିଲା । ମୁଁ କଥାଟାକୁ ସାରିନଥିଲା ପରି ସେଇ ଖିଅ ଧରିନେଇ ଆଉଥରେ କହିଲି— 'ସେଇ ବାସନ ସିନ୍ଦୁକରେ ତ ?'

—ହଁ, ଆଉ ପୁଣି କଉଠି ରଖିବ ? ଜାଗା ଧରିବ କି ନାହିଁ କହୁଛ ?

ମୁଁ ମୁଣ୍ଡ ହଲାଇଲି । ଭଗବାନ୍ ଯେମିତି ମୋତେ ରକ୍ଷାକଲେ ।

ଏଥିରେ ରଖ । ଯାହା ନଧରିବ ତାକୁ ଆଉ କାଠ ସିନ୍ଦୂକରେ ରଖିଦେବ । ଚାବି ଦେଇ ଆସିବ । ବୁଝିଲ ?

ସେ ଚାଲିଗଲେ । ମୁଁ ଆଉ ତାଙ୍କୁ ଚାହିଁନାହିଁ । ତାଙ୍କ କଥାକୁ ଯେମିତି ଦରଶୁଣା କରିଛି । ମୁଁ ଖାଲି ମୋତେ ଚାହୁଁଥାଏ । ଆଉ ସେଇକଥାର ଗୁଣୁଗୁଣିଟାକୁ ମୁଁ କାନ ପାରିଥାଏ— ମୋ ଭିତରେ ।

ମୁଁ ଚାହିଁ ଯା' ଦେଖିଲି— ମୁଁ ନିଜଠୁ ଯାହା ଶୁଣିଲି— ସେ'ଟା ଖାଲି ମନର କଳ୍ପନା ହେଇଥିବଟି— ସେଟା କେବଳ ଗୋଟାଏ ଡର ହୋଇଥିବଟି— ସେଥିରେ କିଛି ବୋଲି ସତ ହେଇନଥାଉ ହେ ପ୍ରଭୁ !

ମୁଁ ଦେଖିଲି— ନା ନା, ମୁଁ ଦେଖିନାହିଁ ମୁଁ କିଛି ଶୁଣୁନାହିଁ— ମିଛ, ଖାଲି ମିଛ— ତୁଚ୍ଛା ମିଛ— ମୁଁ ଏମିତି କେବେ ଦେଖିପାରେନା ।

ବିଭୂତି ମୋଠୁଁ ଅଲଗା ନୁହେଁ । ବିଭୂତି ମୋ' ଦିଅର— ବିଭୂତି ତାଙ୍କ ଭାଇ— ବିଭୂତି ମୋର ଆପଣାର—ବିଭୂତି ଛଡ଼ା ମୋର ଆଉ ଦୁନିଆରେ କିଏ ସାହା ଅଛି ? ବାପା ଆଉ କେତେଦିନ ! ଆଉ କ'ଣ ସତେ ଏଇ ବାବୁନିକି ମୁଁ ଭରସା କରିଛି ନା ? ବିଭୂତି ଏକା ମୋର ଏକା ଆଶାଭରସା ସବୁ । ସେ ମୋତେ ଘରେ ରଖିଲେ ରଖୁ, ତଡ଼ିଦେଲେ ଦେଉ— କିନ୍ତୁ ମୁଁ ବିଭୂତିକି ତ ଛାଡ଼ିପାରିବିନାହିଁ— ମୁଁ ତାକୁ ପର ବୋଲି ଭାବିପାରିବିନାହିଁ— ବିଭୂତି ତାଙ୍କ ଭାଇ— ଲହୁକୁ ଲହୁ ଟାଣେ ।

ସେଇଟା ଗୋଟାଏ ଭୂତ— ସେଇଟା ଗୋଟାଏ ମାୟା !

ମୁଁ ଦେଖିଲି— କି ବାଜେ କଥା— ବିଭୂତି ଆଉ ମୋ ଭିତରେ ଯେଉଁ ସଂଲଗ୍ନ— (ଡାସ୍) ଚିହ୍ନଟା ଥିଲା ସେଟା କୁଆଡ଼େ ଉଠିଯାଉଛି, ବହିର ନୂଆ ଛାପାରେ ସେଠି ବସିଯାଇଛି ଦ୍ୱିତୀୟ ଛେଦ (;) ଆଉ ସେଟା କ୍ରମେ କ୍ରମେ ଯୋଡ଼ିଯାଇ ଗୋଟାଏ ଶକ୍ତ, ସହଜରେ ବାରିହେଲା ଭଳିଆ ମସ୍ତ ପୂର୍ଣ୍ଣଛେଦ ପଡ଼ିଯାଉଛି ।

ନା— ନା— ତା' ହେବନାହିଁ । ମୁଁ ତା' ହେବାକୁ ଦେବିନାହିଁ ।

X X X X

ମଣିଷ ଗୋଟାଏ ନୁହେଁ । ନାଇଁ କେଭେ ନୁହେଁ । ମଣିଷ ଦୁଇଟା— ସମସ୍ତେ ଦୁଇଟା । ମୋର ଏଇ ହାତ— ଗୋଡ଼— ଆଖି କାନକୁ ମୋର ବୋଲି ଯେ କହୁଛି ସେ 'ମୁଁ'କୁ ଛାଡ଼ିଦେଲେ ଆଉରି ବି ଗୋଟାଏ 'ମୁଁ' ଅଛି ଭିତରେ ଯା'ର ସୁରାକ୍ ମୁଁ ଆଜି ପାଇଛି । ସେ 'ମୁଁ'କୁ କେହି ଦେଖିପାରେନାହିଁ, କେହି ସହଜରେ ଜାଣିପାରେନାହିଁ; କିନ୍ତୁ ବେଳେ ବେଳେ ସେ ଆପଣାଛାଏଁ ମଣିଷ ଆଗରେ ଆସି ଅଜମୁଦ ଠିଆହେଇଯାଏ । ଦେଖିଲେ ଡରମାଡ଼େ— ସେଟା ମଣିଷ ନୁହେଁ ପଶୁ— ହିଂସ୍ର ପଶୁ— ରାକ୍ଷସ । ମଣିଷ ତାକୁ ଚାହିଁପାରେନାହିଁ । ବାଘ ଆସିଲା ବୋଲି ଛୁଆ ଯେମିତି ଆଖିବୁଜିପକାନ୍ତି— ମଣିଷ ସେମିତି ତା ମୁହଁରୁ ରକ୍ଷାପାଇବାପାଇଁ ଆପଣା

ଆଖିକି ବନ୍ଦକରିଦିଏ । ସେ ହିଂସ୍ର ଜାନୁଆରଟା ମଣିଷକୁ କାବୁକରିପକାଏ । ମନ୍ତ୍ର କଲାପରି ମଣିଷ ତା ପାଖରେ ଉଁ କି ଚୁଁ କିଛି କହିପାରେ ନାହିଁ ।

ସେ ମଣିଷକୁ– ସେ 'ମୁଁ'କୁ ଏଡ଼ିଦେଇ ଅମାନ୍ୟ କରି ଯିବ କିଏ ? ସେଇଟା ଯେମିତି ମଣିଷର ପ୍ରକୃତ ପ୍ରବୃତ୍ତି– ଭିତର ରୂପ । ଆଉ ମଣିଷ ଯାହା– ମଣିଷ ଉପରକୁ ଯେମିତି ଦେଖାଯାଏ, ସେଟା ଖାଲି ତାର ସଂସ୍କାରର ଛାୟା । ମଣିଷର ଭଲ ମନ୍ଦ ଗୁଣ-ଅଗୁଣ, ଭଦ୍ରତା-ଅଭଦ୍ରତା ସେସବୁ ଖାଲି ବାହାରର ଆବରଣ, ଚିକିଣିଆ ପାଲିସ୍ ।

ମୁଁ ନିଜର ଏ ରୂପ ଦେଖି ନିଜେ ଡରିଗଲି । ଭୟରେ ମୋ ଛାତି ଧସି ପଡ଼ିଥିଲା, ଡୋଳା ଖସିପଡୁଥିଲା । ମୁଁ ସିଠା ପଡ଼ିଯାଉଥିଲି । ସମୟ ମୋ ଦେହରେ ଯେମିତି ଘୁଣ ଲଗାଇ ଚାଲିଯାଇଛି, ଏମିତି ମନେହେଲା– ମନଟା ଥକିପଡ଼ିଛି– ଦେହଟା ଭାଙ୍ଗି ଯାଇଛି– ଆଉ ଅଛି କ'ଣ ? ମୁଁ ନିଜକୁ 'ଛି' କଲି ।

ତା'ପରେ ଯାଇଁ ଚାହିଁଲି ତାଙ୍କ ଫଟକୁ । ସମସ୍ତେ ଯେଝା ଯେଝା ମୁହଁଚୁହାଁ ଦେଇ ସାରିଲେ । ସେଦିନ ରାତିରେ ସେ ଆସି ସବା ପହିଲୁ କହିଲେ, 'ସମସ୍ତେ ତ ସବୁ ଦେଲେ, ମୁଁ ପୁଣି ଦେବି କ'ଣ ?'

ମୁଁ ତଳକୁ ଚାହିଁଲି । ତଳେ ତାଙ୍କର ରୂପଟା ଦିଶିଲା । ସେଥିପାଇଁ କି କ'ଣ ମୁଁ ତଳକୁ ଚାହିଁବାଟାକୁ ଯେମିତି ପାପ ମନେକରି ତାଙ୍କ ଆଡ଼କୁ ଚାହିଁଲି । ସେ ତାଙ୍କ ଶୀତଲୁଗା ଭିତରେ ଲୁଚାଇ ଆଣିଥିଲେ । ମୁଁ ଚାହିଁବା ବେଳକୁ ସେ କାଢୁଛନ୍ତି । କହିଲେ– ଏଇ ନିଅ, ଆଜିଠୁଁ ଇଏ ତମର, ସାଇତି କରି ରଖିବ ।

ମୁଁ ନେଲି । ମୋ ଆଖିରୁ ଲୁହ ବହିଗଲା । ସେ ମୋ ଲୁହ ପୋଛିଦେଲେ । ସେଇ ଫଟ ଏ । ସେଦିନ ତାକୁ ନେଇ ମଥାରେ ମାରି ମୁଣ୍ଡ ପାଖ ଥାକରେ ଯେମିତି ରଖିଥିଲି ଆଜି ବି ସେମିତି ରଖାଯାଇଛି । ମୋ ମଥାର ସିନ୍ଦୂର ଦାଗ ଆଉ ତାଙ୍କ ଗୋଡ଼ରେ ନାହିଁ ଆଜି । କିନ୍ତୁ ସେଇ ଫଟ ଅଛି । ସେଇ ଆଖି–କାନ, ହାତ–ଗୋଡ଼ ସବୁ ସେଇମିତି ଅବିକଳ । ଭାବିଲି, ତାଙ୍କୁ କ'ଣ ଆଜି ଖରାପ ଦିଶୁଛି ମୁଁ ? ମନହେଲା ପଚାରନ୍ତି– ସେ ଆଜି ଥିଲେ ମୁଁ କ'ଣ ସତେ ଇୟା ପଚାରିପାରିଥାନ୍ତି ?

ସେଇ ଫଟ ଏ । ଜୀବନ ନାହିଁ– ପଚାରିଲେ କଥା କହେନାହିଁ । ମୁଁ ଆଜି ତହିଁରେ ଜୀବନ ଆରୋପ କରି ଚାହିଛିଁ– ସେ କ'ଣ ସତରେ କଥା କହିବେ ?–ସତରେ ଜବାବ ଦେବେ ? ମୁଁ କିମିତି ଦିଶୁଛି ? ମୁଁ କ'ଣ ବଦଳିଯାଇଛି ?

କିନ୍ତୁ ଫଟକୁ ମୁଁ ବଦଳାଇନାହିଁ । ଏଇ ଫଟ ସେ । ସେଇମିତି ରଖିଛି । ଆହୁରି ଯତ୍ନ କରି– ଫୁଲ ଚନ୍ଦନ ଦେଇ ଧୂପ ଧୂଆଁ ଦେଇ– ଆସ୍ଥାନ ସଫାସୁତୁରା କରି ସଜାଇ ଥାପନା କରିଛି ।

ସତରେ କ'ଣ ଆସ୍ଥାନ ସଫାସୁତୁରା ରହିଛି ? –ସତରେ କ'ଣ ଆହୁରି ଯତ୍ନ ମୁଁ ନେଉଛି ? ସତରେ କ'ଣ ମୁଁ ତାଙ୍କୁ ସାଇତି ରଖିଛି ? ତା ହେଲେ ମୁଁ ଏମିତି ଅଯତ୍ନ ହେଇପଡୁଛି କିଆଁ ? ମୋର ଯତ୍ନ କେହି ନେଉନାହାନ୍ତି କାହିଁକି ?

ଅନିଷ୍ଟର ଆଶଙ୍କା ହେଲେ ମଣିଷ ଯେମିତି ମନର ଚିନ୍ତାଗୁଡ଼ାକୁ, ବହିର ପୃଷ୍ଠାଗୁଡ଼ିକୁ ଗୋଳାଇପକାଇଲା ପରି ଗୋଳେଇଦେବାକୁ ଚାହେଁ, ମୁଁ ସେମିତି ମୋ ମନରେ କେଉଁ କଥାରେ ଡର ଭୟ କିଛି ନଥିଲା ବୋଲି ମାନିନେବାପାଇଁ ନିଜକୁ ବାଧ୍ୟ କରୁଥିଲି ।

ବାହାରେ ନାଟ ହେଉଥିଲା । ମୁଁ ନାଟ ଦେଖି ଗଲି । ଭିକାରି ମୋତେ ସକାଳ ପହରୁ ଲଗେଇଥିଲା– ସେ କହିଥିଲା ବୋଲି ନୁହେଁ– ମୁଁ ଇଚ୍ଛାକରି ଗଲି । ମୋତେ କେହି ନାଟ ଦେଖିବାକୁ ଡାକିଲେ ମୁଁ ଯାଏନାହିଁ । ମୋର ଭାରି କଷ୍ଟ ହୁଏ– କାନ୍ଦମାଡ଼େ; କିନ୍ତୁ ଆଜି ମୁଁ ଆପେ ଆପେ ଗଲି । ରାଗରେ କି ଜିଦିରେ ମୁଁ କହିପାରୁନାହିଁ, କିନ୍ତୁ ଗଲି ।

ମନେଅଛି– ଥରେ ପଢ଼ିହାରୀ ଘର ଦାଣ୍ଡରେ ନାଟ ହେଉଥିଲା । ଗାଁମାଇପଙ୍କ ସାଙ୍ଗରେ ଗଲି ନାଟ ଦେଖିବାକୁ । ଆସିବାକୁ ଟିକିଏ ଡେରି ହେଲା, ସେ ମୋ ଉପରେ ଅଯଥା ରାଗିଲେ । ମୋତେ କାନ୍ଦିମାଡ଼ିଲା । ଭାରି କାନ୍ଦିଲି । ପଥର ଭଳିଆ ସେ ପାଟି ବି ଫିଟେଇଲେନାହିଁ ।

ମୁଁ କାନ୍ଦି କାନ୍ଦି ରାତି ପୁହାଇଦେଲି । ସେ ଉଠି ଚାଲିଗଲେ ସକାଳ ହେଲାରୁ । ପଦେ କଥାବି କହିଲେ ନାହିଁ । ଦିହ ଭଲ ନାହିଁ ବୋଲି କହି ଦୁଇଦିନ ଭାତ ଖାଇଲି ନାହିଁ । ସେ 'ଖା' ବୋଲି ବି ଥରେ କହିଲେନାହିଁ । ସେଇଦିନଠୁଁ ନାଟ ଆଉ ମୁଁ ଦେଖେ ନାହିଁ ।

ବାବୁନି ଜନ୍ମ ହୋଇଥାଏ । ଏକୋଇଶା ଦିନ ଆମ ଦାଣ୍ଡରେ ପାଲା ଗାଆଣ ହେଉଥାଏ । ଦାଣ୍ଡରେ ଯାତ୍ରା । କେତେଆଉ କେତେ ମାଇପେ ଆସିଲେ ଦେଖିବାପାଇଁ ଆମ ଦାଣ୍ଡକୁ । ମୁଁ କିନ୍ତୁ ଗଲିନାହିଁ । ସାଙ୍ଗମେଳରେ ବସି ଦେଖିବାର ପ୍ରବଳ ଇଚ୍ଛାଟାକୁ ଅଭିମାନର ପଥର ଚାପାତଳେ ଦବେଇରଖି ଚୁପ୍‌କିନି ଶୋଇଲି । ଯିଏ ଡାକେ, କହେଁ –ଛୁଆ ଦିହ ଖରାପ ହେବ ମୁଁ ଉଜାଗର ହେଲେ । ବେଶି କେହି ବଳାନ୍ତି ନାହିଁ ମୋତେ । ମୁଁ ଶୋଇଥିଲି– ନିଦ ଲାଗିନଥାଏ । ତେଣେ ବାଜା ଢାଉଁ ଢାଉଁ, ଏଣେ ପୁଣି ଦଣ୍ଡେ ପହଡ଼କେ ଛୁଆ ଉଠୁଥାଏ ।

ସେ ଆସି ପାଖରେ ଠିଆହେଲେ । ମୁଁ ଜାଣିପାରି ଆଖି ବୁଜିଦେଲି ।

ଶୋଇଲଣି ? –ସେ ପଚାରିଲେ ।

ମୁଁ ଶୁଣିଲିନାହିଁ ।

–ଶୁଭୁଛି ନା ? ସେ ପୁଣି ଡାକିଲେ ।

ମୁଁ ତଥାପି କିଛି କହିଲିନାହିଁ । ଦିହରେ ହାତଦେଇ ସେ ହଲାଇଦେଲେ– 'ଉଁ' ବୋଲି କହି ମୁଁ କଡ଼ଲେଉଟାଇଲି ।

– ଉଠିବ ନା ? ସେ ପଚାରିଲେ ।

ଉଁ– କ'ଣ ?

– ଉଠିଲ ଟିକିଏ ।

କାହିଁକି ?

କାମ ଅଛି ।

— କି କାମ ?

ତମ ଦିହ ଭଲଅଛି ତ ?

ଏଇ କାମ ?

ନାଇଁ, ପଚାରୁଥିଲି କି— ନାଟ ଦେଖିଯିବ— ନାଟ ?

କ'ଣ କହିଲ— ନାଟ ? ନାଇଁ ମୁଁ ଅନିଦ୍ରା ହେବିନାହିଁ । ମୋ ଛୁଆ ଦିହ ଖରାପ ହେବ ।

ଟିକିଏ ଦେଖି ଚାଲିଆସିବ ଚାଲ ।

ନାଇଁ, ମୁଁ ଯିବିନାହିଁ । ମୋର ଅଭିମାନଟା ଯେମିତି ବଢ଼ିଗଲା ।

ହଁ, ଟିକିଏ ଚାଲ । ମୋ ରାଣଟି ।

ମୋତେ ବିରକ୍ତ କରନାହିଁ ।

ସେ ମୋ ହାତ ଧରିଥିଲେ, ମୁଁ ତାଙ୍କ ହାତଟାକୁ ଛାଟିଦେଲି । ତାଙ୍କୁ ଯେମିତି ସେଟା ଭାରି ଜୋର୍‌ରେ କାଟିଲା, ଆଉ ସେ ବାଧାଟା ମୋ ଦେହରେ ଉଚକିନା ଆସି ଲାଗିଗଲା । ଅଭିମାନରେ, ଦର୍ପରେ ମୁଁ ତାଙ୍କୁ କିଛି କହିଲିନାହିଁ । ସେ ସେଠି ଦାରୁଭଳି ଠିଆହୋଇ ରହିଲେ । ତଥାପି ମୁଁ କିଛି କହୁନଥାଏଁ । ପରେ ମୁଁ ବୁଝିପାରିଲି ଏଇ ଅଭିମାନ ଏଇ ଦର୍ପ ମଣିଷର କେଡ଼େ ଶତ୍ରୁ ! କାହାକୁ କ'ଣ କରିପକାନ୍ତି ଏ ସବୁ ! ପ୍ରେମ ଭଳି ଅମୃତ ଭାଣ୍ଡରେ ବିଷ ଢାଳିଦିଅନ୍ତି ।

କେତେବେଳ ପରେ ସେ ଗୋଟାଏ ଦୀର୍ଘନିଃଶ୍ୱାସ ଛାଡ଼ି କହିଲେ— ସେଇ କଥାକୁ ଆଜିଯାଏଁ ମନେରଖିଛ ? ମଣିଷ କେତେଦିନ ବଞ୍ଚିବ ?

ସେକଥା ପଦକ ଏଡ଼େ କରୁଣ ଯେ, ମୋର ମାନ ଅଭିମାନ ସବୁ ସେଇ ପଦକରେ ଭାସିଗଲା କୁଆଡ଼େ । ସେଇଟା ଏଡ଼େ ସତ ହେଇ ଠିଆହେବ ବୋଲି ଦିନେ ମୁଁ ତ ଜାଣି ନଥିଲି । କିନ୍ତୁ ସେ ନିଜେ ଯେମିତି ସତ ହୋଇ ମୋତେ ଗିଳିବ ବୋଲି ଭୟ ଦେଖାଇଲା ।

''ନାଇଁ, ମୁଁ କ'ଣ ସେଇଥିପାଇଁ ଯାଉନାହିଁ ନା— ଛୁଆ ଯଦି ଉଠିବ ?''

ସେ ମୋ ହାତ ଧରିପକାଇ କହିଲେ— ଆସ, ମୋ ରାଣଟି, ଜୀବନରେ ସବୁଦିନେ କ'ଣ ଏମିତି ଦିନ ଆସିବ ?

ମୁଁ ଠିଆହେଲି ।

ସେ ମୋ ପାଖକୁ ଲାଗିଆସି ଓଠଧରି କହିଲେ— ରାଗିଛ ?

ମୁଁ ଛୁଆଙ୍କଭଳି ମୁଣ୍ଡହଲାଇ ମନାକଲି ।

ସେ ତାଙ୍କ ମୁହଁ ମୋ ମୁହଁ ପାଖକୁ ଆଣୁଥିଲେ ।

ସେଦିନ ପରି ଯାତ୍ରା ମୁଁ ଆଉ ଦେଖିନାହିଁ ଜୀବନରେ । ମୋର ମନେଅଛି, ଆମେ ଦୁହେଁ ଲଗାଲଗି ହେଇ ଝରକାବାଟେ ଅନେକ ବେଳଯାଏଁ ଦେଖିଲୁ । ମୋର ମନେ ହେଉଥାଏ, ଦୁଇଟା ନୁହେଁ, ମୋର ଯେମିତି ଦୁଇ ସହସ୍ର ଆଖି ହୋଇଯାଇଛି । ଆଉ

ସେଥିରେ ମୁଁ ଆକାଶ ପାତାଳ ସବୁ ଦେଖିପାରୁଛି । ସେ ଦିନ କ'ଣ ଆଉ କେବେ ଫେରିବ ? ସେ ସୁଖ କ'ଣ ଆଉ କେବେ ହେବ ଏ ଜୀବନରେ ?

ସେଥିପାଇଁ ମୁଁ ଯାତ୍ରା ଦେଖେନାହିଁ । ମୋର ସେସବୁ ମନେପଡ଼ିଯାଏ– ବଡ଼ କଷ୍ଟ ହୁଏ । ମୁଁ କାନ୍ଦେ ।

କିନ୍ତୁ ଆଜି ମୋ ଆଖିରେ ଲୁହ ନଥିଲା । ଲୁହଯାକ ଜମିଯାଇ କେଉଁଠି ଅଟକି ରହିଯାଇଛି ଯେମିତି ।

ଏମିତି ହେଲା କାହିଁକି ?– ମୁଁ ନିଜକୁ ପଚାରିଲି ।

କିନ୍ତୁ ଦେଖିଲି– ମୋର ତ କିଛି ହୋଇନାହିଁ । ମୋ ଦିହ ତ ବେଶ୍ ଭଲ ଅଛି । ମନ ଖରାପ ହେବାର କିଛି କଥା ତ ନାହିଁ ।

ମୁଁ ନାଟ ଦେଖିଲି ।

ଭିତରେ ଯେତେବେଳେ ଗୋଳମାଳ ହୁଏ, ସେତେବେଳେ ନଥିଲେ ବି ବାହାରେ ଗୋଟାଏ ଗୋଳମାଳ ଭିଆଣ କରି ମଣିଷ ନିଜେ ଯାଇ ତା' ଉପରେ ପଡ଼େ– ଏ ଗୋଳମାଳ ଦିହରେ ସେ ଗୋଳମାଳକୁ ଗୋଳେଇ ଦେବାପାଇଁ– ବାହାର ଗୋଳମାଳରେ ଭିତର ଗୋଳମାଳଟା ତାକୁ ଯେମିତି ନ ଶୁଭୁ; କିନ୍ତୁ ତା କ'ଣ ହୁଏ ?

ମୁଁ ନାଟ ଦେଖୁଥାଏଁ । ମୁଁ ନୁହେଁ– ମୋ ଆଖି ଦେଖୁଥାଏ । କୁହୁଡ଼ି ଘୋଟିଲେ ମଣିଷ ଯେମିତି ଜ୍ଳଜଳ କରି ଚାହିଁଥିଲେ ବି ତା' ଛଡ଼ା, ତା ଆଖପାଖ ଚାରିପାଉଶ ଛଡ଼ା ଦୂର ଜିନିଷ ଆଉ କିଛି ଦିଶେନାହିଁ, ମୋର ସେଇୟା ହେଲା । ମୁଁ ଯାତ୍ରା ଦେଖୁଥିଲି; କିନ୍ତୁ ମୋ ନିଜ ଛଡ଼ା ମୋତେ ଆଉ କିଛି ଦିଶୁନଥିଲା । ମନେହେଉଥିଲା ବେଳେ ବେଳେ ଜୀବନ ନାହିଁ, ପ୍ରାଣ ନାହିଁ, କେତେଗୁଡ଼ାଏ ଛବି ରାମଲୀଳା କଣ୍ଢେଇ ପରି ମୋ ଆଗରେ ନାଚିଯାଉଛନ୍ତି ଯେମିତି । ଲୋକେ ବାହାବା କରୁଥାନ୍ତି, ବଳିହାରି ଦେଉଥାନ୍ତି । ଭାବେ, ମନଦେଇ ଶୁଣିଥିଲେ ହୁଏତ ମୋତେ ବି ଏ ଆନନ୍ଦଟା ମିଳିଥାନ୍ତା– ପୁଣି ଥରେ ମନଲଗାଇବାକୁ ଚେଷ୍ଟାକରେ ।

ମନ ବସିଲାନାହିଁ । ନିଦମାଡ଼ିଲା । ମୁଁ ଟିକିଏ ଢୋଳେଇପଡ଼ିଲି ସେଠି । ଏତିକିବେଳେ ଗୋଟାଏ କାନ୍ଦଣା ଶୁଭିଲା ଯେ, ମୁଁ ଚମକିପଡ଼ି ଉଠିଲି । ଚାହିଁ ଦେଖିଲି କେହି ନୁହେଁ । କାନ୍ଦୁଛି– ଯାତ୍ରାର ସୀତା– ମିଛ ସୀତା– ମିଛରେ କାନ୍ଦୁଛି ।

କିନ୍ତୁ ସେଇ ମିଛ କାନ୍ଦଣାଟା ସାଙ୍ଗରେ ଯେଉଁଟା ଏତେ ବଡ଼ ସତ, ମଣିଷର ସେଇ ମନର କି ସମ୍ପର୍କ ଥିଲା କେଜାଣି, ସେ ଟିକିଏ ବିଚଳିତ ହେଇ ଉଠିଲା । ମନ ଭିତରେ ଏମିତି ଗୋଟେ ଜାଗାରେ ସେ ଯାଇ ଗୁମରିଉଠିଲା– ଯେଉଁଠି ଆଉ ଗୋଟାଏ ଯନ୍ତ୍ରରେ ସେଇ ସୁର ଭିଡ଼ି ସତେ କି ସଜାଡ଼ି ରଖିଥିଲା କିଏ ।

ମୁଁ ଆଶ୍ଚର୍ଯ୍ୟହେଲି । ମଣିଷ କ'ଣ ମିଛରେ କାନ୍ଦିପାରେ ? ମଣିଷ ମନକରି ଶୁଖିଲାରେ ଆଖିରୁ ଲୁହଗଡ଼ାଇପାରେ ? ମଣିଷ ଯଦି ଖୁସିରେ ତାମସାରେ ହସିଲା ମନକୁ ଚାହୁଁ ଚାହୁଁ କନ୍ଦାଇଦେଇପାରେ, ତେବେ କାନ୍ଦିଲା ଲୋକ ମନକୁ ସେହିପରି ହସାଇପାରେ ନାହିଁ କିଆଁ ?

ମୁଁ କାନ୍ଦିଲି । ଲକ୍ଷ୍ମଣ ବନସ୍ତରେ ସୀତାଙ୍କୁ ଏକା ଛାଡ଼ିଦେଇଗଲେ । ସୀତା କାନ୍ଦିଲେ । ଓଃ, କି ଦୁଃଖ ! ମୁଁ ନକାନ୍ଦି ରହିପାରିଲିନାହିଁ । ରାମ କେଡ଼େ ନିଷ୍ଠୁର ସତେ ! ଏଇ ରାମ ପୁଣି ଦେବତା ! ମୁଁ ଲୁହ ପୋଛିଲି ଆଖିରୁ ।

ରାମ ସୁବର୍ଣ୍ଣ ସୀତା ଥାପନା କଲେ । ହଁ, ସୁବର୍ଣ୍ଣ ସୀତା, ମିଛ ସୀତା । ସତ ସୀତାକୁ ଉଝେଇଦେଇ ଗୋଟାଏ ନିର୍ଜୀବ ସୀତାକୁ ଧରି ରାଜୁତି କରିବେ । ପୁରୁଷ କି ନିଷ୍ଠୁର ସତେ !

ଭିକାରି ରାମ ପାଟରେ ଭାରି ସୁନ୍ଦର ଦିଶୁଥିଲା । ଭିକାରି ନିଜେ ଦେଖିବାକୁ ଡଉଲ ଡାଉଲ । ତା' ଉପରେ ବେଶହୋଇ ସେ କେଜାଣି କେତେ ଗୁଣ ସୁନ୍ଦର ଦିଶୁଥାଏ ।

ଭିକାରି ସବୁଦିନେ ସୁନ୍ଦର; କିନ୍ତୁ ଆଜି କାହିଁକି ହଠାତ୍ ସେ ମୋତେ ଏତେ ସୁନ୍ଦର ଦିଶିଲା ମୁଁ ତାର କାରଣ ଖୋଜି ପାଇଲିନାହିଁ– ବେଶ ପାଇଁ ନୁହେଁ । ମୋର ମନେହେଲା ସେ ବେଶ ପିନ୍ଧିଥିଲେ, ବେଶ ତାକୁ ଯେତେ ସୁନ୍ଦର କରିଥାନ୍ତା ତାଠୁଁ ସେ ଶହେ ଗୁଣା କି ହଜାରେ ଗୁଣା ସୁନ୍ଦର ଦେଖାଯାଉଛି ।

ଭିକାରି କି ଗମ୍ଭୀର– କି ଶାନ୍ତ ! ତାର ଶାନ୍ତ ଗମ୍ଭୀର ସ୍ୱଭାବ ଉପରେ ଯେମିତି ଆହୁରି ଚାପା ଲଦାହୋଇଛି । ମନେହେଲା– ଭିକାରି ଆଉ ସତ ସତ ରାମ କି !

ଗୋଟାଏ ମିଛର ସୀତାପାଇଁ ଭିକାରିର ଦୁଃଖ, ଭିକାରିର ସନ୍ତାପ ଦେଖି ମୋର ମନେହେଲା, ଭିକାରି କେଡ଼େ ହୃଦୟବାନ୍ ହୋଇ ନଥିବ ! ରାମ ସିନା ସୀତାଙ୍କୁ ପରକଥା ଶୁଣି ବନକୁ ତଡ଼ିଦେଇଥିଲେ; କିନ୍ତୁ ସେ ଯଦି ରାମ ନହୋଇ ଭିକାରି ହୋଇଥାନ୍ତା ତେବେ ସେ କେଉଁ ସୀତାଙ୍କୁ ବନବାସ ପଠେଇନଥାନ୍ତା ।

ମୋତେ ଭିକାରିକି ବଡ଼ ଭଲ ଲାଗିଲା । ତା କଥାରେ ମୁଁ ଗୌରବ ଅନୁଭବ କଲି । ଭିକାରି ଭଲକରୁଛି, ଭଲକରୁଛି ବୋଲି ସମସ୍ତେ କହିଲେ– ତାକୁ କେତେ ଲୋକ ପଦକ ଦେଲେ । ଗର୍ବରେ ମୋ ଛାତି ଫୁଲିଉଠିଲା । ସେ ଆମ ଭିକାରି ପରା !

ରାମଙ୍କର ସୀତାଙ୍କପାଇଁ ଶୋକ, ଭିକାରି ମୁହଁରେ ଶୁଣିବାକୁ ବଡ଼ ଭଲଲାଗୁଥିଲା । ମୁଁ ମନେ ମନେ ଭିକାରିକି କହୁଥାଏଁ, ନିଜେ ତ ଏଇଆ କରିଛୁ ସେଥିପାଇଁ ଆଉ କାନ୍ଦିଲେ କ'ଣ ହେବ ? କାନ୍ଦ୍ କାନ୍ଦ୍ ଆହୁରି କାନ୍ଦ୍– ନିଜ କର୍ମ ଫଳ ଭୋଗ୍ ।

କିନ୍ତୁ ସୀତାର କାନ୍ଦଣାରେ ଯେତେ କଷ୍ଟ ହେଇନଥିଲା ଭିକାରିର କରୁଣ କଥାରେ ତାଠୁଁ ଢେର୍ ବେଶି କଷ୍ଟ ହେଲା ମୋର । ପୁରୁଷର ଅତ୍ୟାଚାରରେ ନାରୀର ଯେଉଁ ମନଟା ବିଦ୍ରୋହୀ ହେଇଉଠେ, ସେଇ ମନ ଏଡ଼େ ଦୁର୍ବଳ ବୋଲି ମୋର ଆଦୌ ଧାରଣା ନଥିଲା । ସେଇ ମନ ପୁଣି ଅତ୍ୟାଚାରୀ ପୁରୁଷପାଇଁ କ୍ଷମାର ଭଣ୍ଡାର ପୂର୍ଣ୍ଣକରି ରଖିଥାଏ । ଅନୁକମ୍ପାର ଦ୍ୱାର ମୁକ୍ତକରି ରଖିଥାଏ– ଆଉ ପୁରୁଷ ଅତ୍ୟାଚାର କରିଛି ବୋଲି– ପୁରୁଷ ଏଇ ଅତ୍ୟାଚାର କରିପାରିଛି ବୋଲି– ପୁରୁଷ ତା' ଆଗରେ ବଡ଼ ହୋଇଉଠେ । ଅତ୍ୟାଚାରୀ ପୁରୁଷ ପାଖରେ ନାରୀ ସବିନୟ ଭକ୍ତି ଅର୍ପଣ କରେ– ଆତ୍ମସମର୍ପଣ କରେ ।

ମୋର ସେଇତା ହେଲା । ଆଜିଯାଏଁ ଭିକାରିକି ମୁଁ ଯାହା ଭାବିଥିଲି ଭିକାରି ମିଛମିଛରେ ଆଜି ମୋ ମନ ଭିତରେ ପଶି ତାଠୁ ବଡ଼ହୋଇଗଲା ।

ନଈସୁଅ ଯେ ସେବାଟେ ନ ଯାଇ ଏବାଟେ କାହିଁକି ଗଲା, ତାର ଜବାବ୍ କିଏ ଦେବ ? ସେଇ ନଈ ପଚାଶବର୍ଷ କି ଶହେଟା ବର୍ଷ ଭିତରେ ପୁଣି ଧାର ବଦଳେଇ ବହିଯାଏ ନୂଆ ବାଟ କାଟି । ତାର କାରଣ, ଧରାବନ୍ଧା ସୂତ୍ର ମଣିଷ ଗୋଟାଏ କରିଥାଏ; କିନ୍ତୁ ନଈ ତାକୁ ସବୁବେଳେ ମାନେନାହିଁ । ସେଇ ନିୟମ ଭିତରେ ରହି ସେ କେତେ ଅନିୟମ କରିବସେ ।

ନଈବଢ଼ି ଭଳି ମଣିଷ ମନ କେତେବେଳେ କେଉଁ ଆଡ଼କୁ ଯେ ଢଳିଯାଏ, ତାର କିଛି ଠିକ୍ ଠିକଣା ନଥାଏ । ଭଲପାଇବାର ନିୟମ ବି ମଣିଷ ବାନ୍ଧିଦେଇଯାଇଛି; କିନ୍ତୁ ସେ ନିୟମ ସବୁବେଳେ ସମାନ ରହେନାହିଁ । ମଣିଷ ଭାବିଚିନ୍ତି ଚେଷ୍ଟାକରି ନିୟମ ଅନୁସାରେ ମନକୁ ଢଳାଉଥିଲେ କେଜାଣି ବା କେଉଁଠି ଢଳୁଥିବ– କିନ୍ତୁ ମନଟା ନିଜେ ନିଜେ ଢଳିଗଲେ ସେ ସୁଅରେ ଯେଉଁ ଟାଣ ଥାଏ, ସେ ଟାଣ ଆଉ କେଉଁଠି ମିଳେନାହିଁ ।

ମଣିଷ ଭଲ ଜିନିଷକୁ ଚେଷ୍ଟାକରି, ଭଲ ବୋଲି ଧାରଣାକରି ଭଲପାଇପାରେ । ଖରାପ ଜିନିଷଟାକୁ ବାଧ୍ୟ ହୋଇ ଭଲପାଇ ଶିଖେ; କିନ୍ତୁ ଯେଉଁଠି ମଣିଷ ଆପେ ଆପେ ଭଲପାଇଯାଏ, ସେଠି ଭଲ ମନ୍ଦର ହିସାବକିତାବ କରିହୁଏନାହିଁ । ସେଠି ସମସ୍ତେ ଯାହାକୁ ଖରାପ ବୋଲି କହୁଥାନ୍ତି ସେଟା ବି ଭଲଲାଗେ– ଆଉ, ଥରେ ଭଲପାଇଲାଠୁଁ ଦୁନିଆଟାଯାକ ଯଦି ଷଡ଼ଯନ୍ତ୍ର କରି ଏକାସ୍ୱରରେ କହିଉଠନ୍ତି– 'ସେଟା ଖରାପ, ଖରାପ' ବୋଲି, ତେବେ ସେ ଯେତିକି ଜୋର୍‌ରେ ଖରାପ ବୋଲି ସାବ୍ୟସ୍ତ କରିବାରେ ଲାଗିଥାନ୍ତି, ଯିଏ ଭଲପାଇଛି, ତାକୁ ସେ ଭଲପାଇବା ଜିନିଷଟା ଠିକ୍ ସେତିକି ଜୋର୍‌ରେ ବେଶି ଭଲ ଲାଗିଚାଲିଥାଏ ।

ଭିକାରିକି ମୁଁ ଭଲପାଇଲି । ଭିକାରିର ମୋର କିଛି ସଂପର୍କ ନାହିଁ । ଭିକାରି ଆମ ଘରେ ଆଶ୍ରିତ । ମୋର ସେ ସରି-ସମ୍ବନ୍ଧ ନୁହେଁ । ତଥାପି ମୋତେ ତାକୁ ଭଲଲାଗିଲା ।

ଭିକାରିକି ସେ ଭଲପାଉଥିଲେ । ସେ ଘରେ ଆଶ୍ରୟ ଦେଇଥିଲେ । ମୋର ଭଲପାଇବାକୁ ଅନ୍ୟାୟ ବୋଲି କିଏ କହିବ ?

ଭିକାରି ଗରିବ– ଆମେ ବଡ଼ଲୋକ– ହେଲା ଏବେ ! ଗରିବକୁ ଦୟାଦେଖାଇବାରେ, ସ୍ନେହକରିବାରେ ଅପରାଧ ହେବ କାହିଁକି ?

ଭିକାରି, ଭିକାରି ନୁହେଁ । ତାର ଘର ଅଛି, ଦୁଆର ଅଛି । ତମେ ତାକୁ ଖୁସିରେ ଆଣି ରଖିଛ । ଯାହାକୁ ଘରେ ଜାଗା ଦେଇଛ, ତାର ଯଦି ଟିକିଏ ଭଲଭାବରେ ଯତ୍ନ ନିଆଯାଏ, ତେବେ ସେଟା ପାପ ହେବ ନା ?

ଭିକାରି ଯାତ୍ରା ଟୋକା ନୁହେଁ । ବଜାରୀ ନୁହେଁ । ତମେ କହିଲ ବୋଲି ତମ ବାହାଘରକୁ ସେ ଗାଁ ଟୋକାଙ୍କୁ ମତେଇ ଗୋଟାଏ ଯାତ୍ରାକରି ଦେଖେଇଦେଲା ତା'ଠି କି ଗୁଣ ଅଛି । ସେମିତି ଲୋକଙ୍କୁ ମାନ, ଖାତିର୍ କରିବା ନୀଚତା ବୋଲି କିଏ ଦୋଷ ଦେବ ?

X X X X

ତହିଁ ଆରଦିନ । ଭିକାରିକୁ ମୁଁ ଡାକି ନିଜେ ଜଳଖିଆ ଦେଲି । ଭିକାରି ମୋତେ ଟିକିଏ ଚାହିଁଲା । ମୁଁ ସେତେବେଳେକୁ ତା'ରି ମୁହଁକୁ ଚାହିଁଥାଏ । କି ସୁନ୍ଦର ସତେ ଭିକାରି ! ପରୀ ଗପର ରଜାପୁଅ ପରି କେଉଁ ଯାଦୁ ପୋଖରୀରେ ବୁଡ଼ମାରି ସେ ଆଜି ଯେମିତି ହଠାତ୍ ଦିବ୍ୟ ସୁନ୍ଦର ରୂପ ଘେନି ଆସିଛି– ସେକଥା ସେ ନିଜେ ବି ଜାଣେନାହିଁ ।

କି ସୁନ୍ଦର ରୂପ– କି ସୁନ୍ଦର ଆଖି– କି ସୁନ୍ଦର ଓଠ– କି ସୁନ୍ଦର ଠାଣି ।

ଭିକାରି ସେଦିନ କି ଆନନ୍ଦରେ ଯେ ଜଳଖିଆ କଲା, ଆଉ କହିବାର ନୁହେଁ । ତା' ମୁହଁରୁ ଆନନ୍ଦଟା ଯେମିତି ଫାଟିପଡୁଥିଲା; କିନ୍ତୁ ତା ଚାହାଣିରେ କରୁଣତା ଥିଲା– ମନେହେଉଥିଲା ତା ଡୋଳାଯୋଡ଼ିକ କେଉଁଠୁ ଗାଧୋଇପାଧୋଇ ଶୀତଦିନିଆ ସକାଳୁଆ ଥଣ୍ଡା ପବନ ଲାଗି ଥରିଉଠୁଛି ।

ମୁଁ ତାକୁ ଦେଲି । ସେ ଖାଇଲା । ସେ ଖାଉଛି, ତାର ଯେମିତି ଖିଆଲ ନାହିଁ– ଆଉ ମୁଁ ଦଉଛି, ମୋର ଯେମିତି ମନେନାହିଁ । ମୁଁ ଯାଚୁଥାଏଁ ସେ ମନାକରୁଥାଏ– ମୁଁ ଦେଉଥାଏଁ– ସେ ଖାଉଥାଏ ।

କେତେବେଳ ପରେ କହିଲା– ଆଉ ଖାଇବିନାହିଁ– ପେଟ ଭରିଗଲାଣି । ସେତକ ଶୁଣିବାକୁ ମୁଁ ସତେ କି ଚାହିଁବସିଥିଲି । ମୁଁ ନ ମାନି ଆହୁରି ଦେବାକୁ ବସିଲି । ସେ ବ୍ୟସ୍ତ ହୋଇ ମନାକଲା । ମୁଁ ବଳେଇଲିନାହିଁ ।

ପଚାରିଲି– ତମର ଆଉ ପୁଣି କେବେ ହେବ ?

କହିଲା– ନାଇଁ, ଏମିତି ଖୁସିବାସିଆ ଗୋଟେ କରିଦେଲୁ ନା ! ଆଉ ପୁଣି ସମସ୍ତଙ୍କୁ ଏକାଠିକରି କରିବା କାଠିକରପାଠ । ଯେଉଁ କଷ୍ଟ ହୋଇଛି ଏଥର ! ଏତେକଥା କରି ତା'ପରେ ପୁଣି ନାଚିବା– କାଲି କ'ଣ ମୁଁ ଭଲକରିପାରିଲି କି ?

କାହିଁକି– କାଲି ତମର ଭଲହୋଇଥିଲା ତ– ଖୁବ୍ ଭଲହୋଇଥିଲା ।

ତମେ ଯାଇଥିଲ– ଦେଖିଥିଲ ଅପା ?

ସେ ମୋତେ ଅପା ବୋଲି ଡାକେ । ସେ ଯେମିତି ମୋଠୁଁ ସେଇ କଥାପଦକ ଶୁଣିବା ପାଇଁ ଏତେ କଥା କହିଗଲା । ମୁଁ ତାକୁ ଭଲହୋଇଥିଲା ବୋଲି କହିବାରେ ତାର ଯେମିତି ସାରା ଯାତ୍ରାର ସାର୍ଥକତା ନିର୍ଭର କରୁଥିଲା ।

ହଁ, ମୁଁ ଦେଖିଥିଲି, ତୁମେ କହିଥିଲ ବୋଲି ଯାଇଥିଲି–

କେମିତି ଲାଗିଲା ? –ସେ ପୁଣି ପଚାରିଲା ।

ଖୁବ୍ ଭଲଲାଗିଲା । ଏତେ ଯାତ୍ରାବାଲା ଆସନ୍ତି– ଏମିତି ତ କେହି କରନ୍ତିନାହିଁ ! ମୋତେ ସେଥିପାଇଁ ସେସବୁ ଯାତ୍ରା ଦେଖିବାକୁ ଭଲଲାଗେନାହିଁ । ଏମିତି ଯାତ୍ରା ହେଲେ ତ ନିତି ଦେଖନ୍ତି ।

ସେ ସବୁ ଲୀଳା– ଏ ହେଲା ନାଟକ । ଏ ଆଧୁନିକ ଧରଣର । ଏସବୁ ପଢ଼ାଶୁଣା ଲୋକଙ୍କର କାମ । ଏଟା ଉଚ୍ଚ ଧରଣର କଳା । ମଫସଲର ସାଧାରଣ ଲୋକେ ଏସବୁ ବୁଝିପାରିବେନାହିଁ । ଲୀଳାକଲାବାଲା ଏ କାଇଦା ପାଇନାହାନ୍ତି– ଏ ଜିନିଷ ଧରି ପାରିବେନାହିଁ ।

ମୁଁ ଭାବିଲି, ସତେ ଭିକାରି କେତେ କଥା ଜାଣେ ମ ! ୟାଙ୍କରି ପାଖରେ ରହି ରହି ସେ ମଣିଷ ହୋଇଯାଇଛି । ମନେହେଲା– ଭିକାରି ଯେମିତି ତାଙ୍କରି ପ୍ରତିଛବି ।

ଭିକାରିକି ମୁଁ ଜାଣେ । ଭିକାରି ପଢ଼ାଶୁଣା କରିଛି–ଭିକାରି ଚାଲାକ– ଭିକାରି ଭଦ୍ର, ଭିକାରି ତାଙ୍କର ଖୁବ୍ ବିଶ୍ୱସ୍ତ ଥିଲା । ମୁଁ ବି ସବୁଦିନେ ତାକୁ ବିଶ୍ୱାସ କରେଁ ତାଙ୍କରି ଯୋଗୁଁ । ସେ ଭିକାରିକୁ ଭାରି ଆଦର କରୁଥିଲେ । ମୁଁ ବି ତାକୁ ସେତିକି ଆଦର କରୁଥିଲି– ଯେତିକି କଲେ ସେ ଖୁସିହେବେ ବୋଲି ମୁଁ ବୁଝିପାରୁଥିଲି । ତାଙ୍କପାଇଁ ଭିକାରି ମୋ ଆଗରେ ଯାହା ଥିବାର କଥା, ସେଇଆ ଥିଲା । ସେ ଚାଲିଗଲା ପରେ ଭିକାରିର ମୋର ସଂବନ୍ଧ ଦିହରେ କେଉଁଠି ଠାଏ ସୂତାଟା ହୁଗୁଳା ହୋଇ ଆସିଥିଲା ଯେମିତି । ଆଜି ମୁଁ ଭିକାରିକି, ସେ ଯେଉଁଠି ଥିଲା । ହଠାତ୍ ତାଠୁଁ ଏତେ ଉପରେ ନେଇ ରଖିଲାବେଳେ ସେଇ ଢିଲା ଫେରଟା ଧରାପଡ଼ିଯାଉଛି । ମୁଁ ବୁଝିପାରୁଛି, ଭିକାରିର ଯୋଗ୍ୟ ପ୍ରାପ୍ୟ ମୋଠୁଁ ସେ କେବେ ପାଇନାହିଁ– ସେ ମଲା ଦିନୁଁ ଆଦର ପାଇନାହିଁ– କିଛି ପାଇନାହିଁ ।

ଭିକାରି କହିଲା– 'ଅପା, ମୁଁ ଆଜି ଟିକିଏ ଘରକୁ ଯିବି ।'

ଭିକାରି ମଝିରେ ମଝିରେ ଘରକୁ ଯାଏ । ସେ ଘରକୁ ଗଲେ ମୁଁ ଜାଣେଁ; କିନ୍ତୁ ମୋତେ ପଚାରି ସେ ଘରକୁ ଯିବାକଥା ମୋର ମନେନାହିଁ । ଆଜି ସେ ପଚାରିଲା । ଯେମିତି ମୁଁ କହିଲେ ସେ ଯିବ– ନୋହିଲେ ନାହିଁ ।

ଯିବ ?

ହଁ ।

କାହିଁକି ?

ଅନେକଦିନୁ ଯାଇନି– ଟିକିଏ ବୁଲିଆସେଁ ।

ସେ ଘରକୁ ବାହାରିଲା । ମୁଁ ଦାଣ୍ଡଦୁଆର ଏପାଖଯାଏଁ କାହିଁକି କେଜାଣି ତା ସଙ୍ଗେ ସଙ୍ଗେ ଗଲି । ଦୁଆରବନ୍ଧ ମାଡ଼ି ସେପାଖରେ ଗୋଟେ ଗୋଡ଼ ଦେଇଛି, ତା'ର କ'ଣ ମନହେଲା କେଜାଣି– ବୁଲିପଡ଼ି ଏଣିକି ତେଣିକି ଚାହିଁଲା । କେହି ନଥିଲେ । ସେ ଧୀରେ ଧୀରେ ମୋ ପାଖକୁ ଫେରିଆସିଲା । ତାକୁ ଡରଲାଗୁଥାଏ ଆସିବାକୁ ଯେମିତି ମୋ ପାଖକୁ । ଆସି ସେ ଗୋଟାଏ ଲମ୍ୱ ଦଣ୍ଡବତ ପକେଇଲା । ମୁଁ ତାକୁ ହାତଧରି ଉଠାଇଦେଲି । ସେ କିଛି କହିଲାନାହିଁ– ମୁହଁକୁ ତଳକୁ ପୋତି ଠିଆହେଲା ।

ମୁଁ କହିଲି– ଯା– କେବେ ଆସିବ ?

ଦିନେ ଦୁଇଦିନ ରହି ଚାଲିଆସିବି– କହି ସେ ହଠାତ୍ ମୁହଁଫେରେଇ ଖୁବ୍ ଚଞ୍ଚଳ ପାଦପକାଇ ମୋଠୁଁ ଦୂରକୁ ଦୂରକୁ ଚାଲିଗଲା ।

X X X X

ମୁଁ ଯାତ୍ରା ଦେଖେଁ । ଯାତ୍ରା ଦେଖିଲେ ଆଉ କାନ୍ଦେନାହିଁ– ଯାତ୍ରା ହେବା କଥା ଶୁଣିଲେ ମୁଁ ଆଉ ଚମକେନାହିଁ । ଯାତ୍ରା ହେବାବେଳେ ସେଇ ଖିଡ଼ିକି ପାଖରେ ଯାଇ ଠିଆହେଲେ ମୋତେ ଆଉ ଡରମାଡ଼େନାହିଁ– ମୋ କାନ୍ଧରେ କିଏ ହାତପକାଇ ଦେଲା

ପରି ମୁଁ ଆଉ ଚିହିଁକି ଉଠେନାହିଁ । ମୁଁ ସ୍ଥିର, ଅଚଳ, ଗମ୍ଭୀର । ଯାତ୍ରା ଦେଖିବା ମୋ ଜୀବନର ଯେମିତି ଏକମାତ୍ର ଉପଭୋଗ ।

ମୋରି କଥାରେ ଯାତ୍ରା ହୁଏ । ଭିକାରି କ୍ରମେ କ୍ରମେ ଗୋଟିଏ ଯାତ୍ରାଦଳ ଗଢ଼ି ପକାଇଲା— ମୋରି ଉତ୍ସାହରେ— ମୋ'ରିପାଇଁ କହିଲେ ଚଳେ ।

ବଡ଼ ବଡ଼ ପୂନେଇଁ ପର୍ବରେ ଯାତ୍ରା ହୁଏ । ଯାତ୍ରା ସରିବାକ୍ଷଣି ଭିକାରି ଆସି ମୋତେ ପଚାରେ— 'କେମିତି ହେଲା ?' ମୋଠୁଁ ଶୁଣିସାରିଲେ ସେ ଚାଲିଯାଏ । ଆଉ କାହାରି ଟୀକା ଟିପ୍ପଣୀକୁ ସେ ଖାତର୍ କରେନାହିଁ । ମୁଁ ଯେମିତି ତା' ଯାତ୍ରାର ଅଧିଷ୍ଠାତ୍ରୀ ଦେବୀ ।

ବହୁତ କଷ୍ଟକରି ସେମାନେ ଗୋଟିଏ ନୂଆ ପାଲା ଶିଖିଲେ । ସେଦିନ କୁଆଁର ପୂନେଇଁ । ପାର୍ବଣକୁ ସେମାନେ କରିପାରିନଥିଲେ – ସେଥିପାଇଁ କୁଆଁର ପୂନେଇଁ ଦିନ ଯାତ୍ରା ହେବାର କଥାହେଲା । ଭାଗ୍ୟ ଏମିତି— ସେଦିନ ସକାଳଟାରୁ କିଛି କୁଆଡ଼େ ନାହିଁ— ଭିକାରିକି ଆସିଲା କମ୍ପଜର । ସମସ୍ତଙ୍କ ମନ ଫିକାପଡ଼ିଗଲା । ସଞ୍ଜହେଲା । ଆଖପାଖ ଗାଁରୁ ବହୁତ ଲୋକ ଆସି ଜମାହେଲେ । ଏମାନଙ୍କ ମନେ ମନେ ଭିକାରି ଦେହ କ'ଣ ଟିକିଏନାଁକୁ ହେଇଛି— ସଞ୍ଜବେଳକୁ ଭଲ ହେଇଯିବନାହିଁ କି ? ଯାତ୍ରାର ସବୁ ବନ୍ଦୋବସ୍ତ ଚାଲିଲା । ଭିକାରି ବି କହୁଥାଏ— 'ହଁ, ମୁଁ ଭଲହେଇଯାଉନାହିଁକି— ତମେ ସବୁ ଯୋଗାଡ଼ଯନ୍ତ୍ର କର ।' ଶେଷରେ ବେଶହେବା ବେଳ ହେଲା । ଭିକାରିର ତେବେ ବି ଜର କମିବାକୁ ନାହିଁ । ତାକୁ ପଚାରିଲେ— 'କ'ଣ କରିବା ଭିକାରିବାବୁ ?' ସେ ତଥାପି କହୁଥାଏ— ବେଶ ହୁଅ, ମୁଁ ଯାଉଛି । ସମସ୍ତେ ବେଶ ହେଲେ— ଏକା ଭିକାରି ଛଡ଼ା । ଭିକାରି ବେଶ ନହେଲେ ନହୁଏ । ପହିଲୁ ସେ ବାହାରିବ । ଭିକାରିକି ଆସି ଡାକିଲେ ବେଶ ହେବାପାଇଁ । ସେ କହିଲା— ଯା'— ଅପାକୁ ପଚାରିଆସ ।

ମୁଁ ମନାକଲି— ତା' ଜୀବନ ଆଗ ନା ତମ ଯାତରା ଆଗ !

ସମସ୍ତେ ବେଶ ଫିଟାଇବାକୁ ବସିଲେ । ଭିକାରି ଉପରେ ଭାରି ରାଗିଲେ ସମସ୍ତେ । ଭିକାରି ମୋ ପାଖକୁ ଆସିଲା । ପଚାରିଲା— ବେଶ ହେବି ?

ନା— ନା— ମୁଁ ମନାକଲି ।

ସେମାନେ ସବୁ ମୋ ଉପରେ ରାଗୁଛନ୍ତି— ମୋତେ ଦୋଷ ଦେଉଛନ୍ତି । ଆଜି ମୁଁ ଠିଆନହେଲେ ହୁଏତ ଦଳ ଭାଙ୍ଗିଯିବ ।

ଭାଙ୍ଗିଗଲେ ଯାଉ ! ନା, ତମ ଦେହ ଏମିତି— ଏ କ'ଣ ଖେଳଘର ପଡ଼ିଛି !

ସେ ଉଠି ଚାଲିଗଲା । ନିହାତି ବାଧ ଛୁଆଟିଏ ପରି ମୋ ମନ ଟିକିଏ ଗୁଡ଼େଇ ହେଲା । ଭାବିଲି— ଯାତ୍ରା ଭାଙ୍ଗିଯିବ ? ଭିକାରି ଆଉ ନାଚିବନାହିଁ ? ଭିକାରି ଆଉ ରାମ ହେବନାହିଁ— ଭିକାରି ଆଉ ଅର୍ଜୁନ ସାଜିବନାହିଁ— ଭିକାରିକି ଆଉ ବୀର ବେଶରେ ମୁଁ ଦେଖିବିନାହିଁ ?

ଡାକିଲି— ଭିକାରି, ଭିକାରି !

ସେ ଫେରିଲା ।

ତମେ ପାରିବ ? ତମର ସାହସ ହଉଚି ?

ହଁ– ସେ କହିଲା ।

ହଉ, ତେବେ ଯା । ବେଶି ହେଲେ ଯାତ୍ରା ଭାଙ୍ଗିଦେବ ପଛେ– ଦେହକୁ କଷ୍ଟ ଦେବ ନାହିଁ ।

ସେ ଗଲା । ଯାତ୍ରା ହେଲା । ସେଦିନ ସେ ଯେପରି ଅଭିନୟ କରିଥିଲା– ଏମିତି ସୁନ୍ଦର ସେ ଆଗରୁ କେବେ କରିନାହିଁ । ମୋତେ ତା ଅଭିନୟ ଅତି ଭଲଲାଗିଲା ।

ମନେହେଲା, ଦୁଧରେ ସର ପଡ଼ିଲା ପରି, ଭଲପାଇବାଟା ଏଇମିତି ଆସ୍ତେ ଆସ୍ତେ ତାପ ପାଇ ବହଳ ଗାଢ଼ ହେଇଆସେ ବୋଧହୁଏ । ଆଉ ଯେତିକି ଗାଢ଼ ହେଇଆସେ, ସେତିକି ଭରପୂର ହେଇଯାଏ ।

ମୁଁ ସତରେ ଭିକାରିକି ଅତି ଭଲପାଇଗଲି । ମନେହେଲା, ଭିକାରି ମୋ'ରି କଥାକୁ ନେଇ ସେଠି ଯେମିତି ମଉନ ମୁହଁର ଭାବଭଙ୍ଗୀରେ ଦୁନିଆ ଆଗରେ କହିଦେଉଛି– ଦୁନିଆଯାକ ଲୋକଙ୍କ ପ୍ରାଣରେ ଆଘାତ ଦେଉଛି– ଆଉ ଦୁନିଆଟାକୁ ପ୍ରକାଶ୍ୟରେ ଜଣାଇଦେଉଛି ଯେ ତା' ମନ ମୋ ମନ ଏକ; କିନ୍ତୁ ଦୁନିଆ ତାକୁ ଘେନୁନାହିଁ । ମୋ'ରି ଜିନିଷ ମୋର ହୋଇ ପୁଣି ମୋ'ରି ପାଖକୁ ଫେରିଆସୁଛି ।

ତହିଁ ଆରଦିନ ସକାଳେ ତାକୁ ଭାରି ଜର ହେଲା । ସେ ଅଥୟ ହୋଇ ଗଡ଼ିଲା ବିଛଣାରେ । ବାପା ଲୋ ମା ଲୋ ହେଲା । ମୁଁ ଯାଇ ପଚାରିଲି– ଘରକୁ ଯିବାକୁ ମନହଉଛି ?

ସେ ମୋତେ ଜଳଜଳକରି ଚାହିଁଲା । ତା ଆଖିରେ କୁହୁଡ଼ି ମାଡ଼ିଆସିଲା ପରି ଦେଖାଗଲା । କଣ୍ଠ ତାର ଫୁଲିଉଠିଲା । ସେ କୋହ ସମ୍ଭାଳି ନପାରି କାନ୍ଦିପକାଇଲା ।

ମୁଁ ସଙ୍କୋଚ ଛାଡ଼ି ତା' ପାଖରେ ବସିଲି । କହିଲି– କାନ୍ଦନାହିଁ– ଟିକିଏ ଦିହ ହେଉଛି– ବଳେ ଛାଡ଼ିଯିବ ।

ତା ଆଖିରୁ ଲୁହ ବହିଯାଉଥାଏ । କହିଲା– ମୁଁ ଘରକୁ ଯିବିନାହିଁ– ଏଇଠି ମରିବି ପଛେ– ଘରକୁ ଯିବିନାହିଁ । ସେ ସକେଇହେଲା ପରି କାନ୍ଦିଲା ।

ତା'ର ଏ କାତର କଥା ଶୁଣି ବଳେ ବଳେ ମୋର ହାତଟା ଯାଇ ତା' ପିଠି ଉପରେ ରହିଲା । ମୁଁ ତାକୁ ଆଉଁସି ଦେଉଁ ଦେଉଁ କହିଲି– ନା–ନା–ତମେ ଘରକୁ ଯିବନାହିଁ । ତମକୁ ଏ ଅବସ୍ଥାରେ ଘରକୁ ଛାଡ଼ିଦେବ କିଏ ?

ସେ ଯେମିତି ବଡ଼ ଆଶ୍ୱାସନା ପାଇଲା ଏ କଥାରେ । ମୁଁ ପଚାରିଲି– ବାପା ଘରେ ନାହାନ୍ତି କି ?

ଘରେ ? ଘରେ ମୋର କେହି ନାହିଁ । ସେ କଡ଼ଲେଉଟାଇ ତକିଆ ଉପରେ ମୁହଁ ଗୁଞ୍ଜିଲା । କେଉଁ ଜାଗାରେ ତାର ଦରଜ ମୋତେ ଆପେ ଆପେ ଜଣାଗଲା ପରି ସେ କାନ୍ଦୁଥାଏ । ସାରା ଶରୀର ତାର କାନ୍ଦୁଥାଏ ଯେମିତି ।

ମୁଁ ତା ପିଠି ଉପରେ ହାତ ବୁଲେଇ ଦଉଁ ଦଉଁ କହିଲି– ଛି, କାନ୍ଦନାହିଁ ।

କେତେବେଳକେ ତାର କାନ୍ଦଣାର କୋହଟା କମିଯିବାରୁ ସେ ମୁହଁ ବୁଲାଇ ଚିତ୍‌ହୋଇ ଶୋଇଲା । ନିଶ୍ୱାସ ଭାରି ଜୋର୍‌ରେ ଚାଲିଥାଏ । ମୁଁ ତା ମୁଣ୍ଡ ପାଖକୁ ଘୁଞ୍ଚିଯାଇ ମଥାରେ

ହାତ ବୁଲାଇ ବାଳ ସାଉଁଳେଇଦେଲି । ଭାରି ଜର । କପାଳରେ ହାତ ଦେଇହେଉ ନଥାଏ । ଆଖି ଦୁଇଟା ଲାଲ । ସେଥିରେ ପୁଣି କାନ୍ଦି କାନ୍ଦି ଫୁଲିଉଠିଥାଏ । ବେଶି ଜର ପାଇଁ ହେଉ ବା ଯେଉଁଥିପାଇଁ ହେଉ ଏବେ ବି ଆଖିରେ ଲୁହ ଛଳଛଳ ହେଉଥାଏ । ମନ ହେଲା, କାନିରେ ମୁହଁ ପୋଛିଦିଅନ୍ତି; କିନ୍ତୁ କ'ଣ ମୋତେ ଟିକିଏ ବାଧା ଦେଉଥିଲା । ହେଲେ ବି ମୁଁ ସେ ବାଧା ମାନି ରହିପାରିଲିନାହିଁ । ଆଖିରୁ ଲୁହ ଗଡ଼ି କାନମୂଳଯାଏଁ ବହି ଆସିଲା । ମୁଁ ତାକୁ ମୋରି କାନିରେ ପୋଛିଦେଲି । ଦିହରେ ହାତଦେଇ ଦେଖିଲି– ଖଇ ଫୁଟିଯାଉଛି । ଛାତିଟା କେଡ଼େ ଜୋର୍‌ରେ ଦାଉଁ ଦାଉଁ ନାଚୁଛି । ନିଶ୍ୱାସ ଖର । ଡୋଳା ଦୁଇଟି ଅବଶ, ନିସ୍ତେଜ । ଆଖି ଦରବୁଜା । ମୁଁ ତରବର କରି ଯାଇଁ ଗିଲାସରେ ଖୁବ୍ ଥଣ୍ଡା ପାଣି ଆଣି ଦୁଇଖଣ୍ଡ ସଫାକନା ବୁଡ଼ାଇ ଅଦଳ ବଦଳ କରି ତା' ମୁଣ୍ଡରେ ଜଳପଟି ଦେଲି । ଥଣ୍ଡା ହେଲାରୁ ତାକୁ ଟିକିଏ ନିଦ ଲାଗିଆସିଲା । ମୁଁ ଘରର ଚାରିପଟକୁ ଚାହିଁ ଦେଖିଲି, କେହି ନଥିଲେ । ମୋତେ କାହିକିଁ ଟିକିଏ ଡରଲାଗିଲା । କେହି ନାହାନ୍ତି, ମୁଁ ଏକା– କାଳେ କିଏ କ'ଣ ଭାବିବ ! ମୁଁ ଉଠି ଠିଆହେଲି । ତାକୁ ଚାହିଁଲି । ସେ ଶୋଇଥିଲା ପରି ଜଣାଗଲା । କେଡ଼େ ଶାନ୍ତ, କେତେ ଧୀର– କେଡ଼େ ଗମ୍ଭୀର ! ଭିତରଟା ଯେମିତି ଅଗାଧ । ସେଇ ଅତଳ ଜଳ ଭିତରେ ଥରେ ବୁଡ଼ିପଡ଼ିବାକୁ ମୋର କାହିଁକି ମନ ହେଲା କେଜାଣେ !

X X X X

ତହିଁ ଆରଦିନ ସକାଳେ, ସାଗୁ କରି, ଦୁଧ-ଚିନିଦେଇ ଚାକର ହାତରେ ପଠେଇ ଦେଲି । ଡର ହେଲା, ତାର ଏତେ ବେଶି ଯତ୍ନ ନେଉଛି, ଖବର ରଖୁଛି ବୋଲି କାଳେ କିଛି ଭାବିବ ! ଚାକର ଆସି କହିଲା– ଦି' ଢୋକ ଖଣ୍ଡେ ପାଟିକି ନେଲେ ଆଉ ପିଇଲେ ନାହିଁ । ଯେତେ କହିଲି ମନାକଲେ । କହିଲେ– ଭଲଲାଗୁନାହିଁ ।

ତା' କଥା ଶୁଣି ମୋ ମନଟା ଗୁଡ଼େଇହେଲା । ମୋର ଧାରଣା ହେଲା ମୁଁ ନେଇ ଯାଇଥିଲେ ସେ ଆଉ ଟିକିଏ ଖାଇଥାଆନ୍ତା କି କ'ଣ !

ମୁଁ ଏଥର ନିଜେ ନେଇ ଗଲି । ଜର ପାଟି ବୋଲି ଟିକିଏ ବାଇଗଣଚଟଣି କରି ନେଇଥିଲି ।

ମୁଁ ଡାକିଲି– ଭିକାରି !

ସେ ଆଖିବୁଜି ପଡ଼ିଥିଲା, ଚାହିଁଲା ।

ଟିକିଏ ଖାଇବ ? –ମୁଁ ପଚାରିଲି ।

ତା, ଆଖିଯୋଡ଼ିକ କୃତଜ୍ଞତାରେ ନରମ ହୋଇପଡ଼ିଲା । ମୁହଁ ଆନନ୍ଦରେ ଭରି ଉଠିଲା । ସେ ଉଠିବାକୁ ଚେଷ୍ଟାକଲା ।

ମୁଁ ବାରଣ କଲି– ନାଇଁ– ନାଇଁ ଉଠନାଇଁ, ଶୋଇରହ । ମୁଁ ଟିକିଏ ଟିକିଏ କରି ମୁହଁରେ ଢାଳିଦିଏଁ ।

ସେ ଆନନ୍ଦରେ ସବୁଯାକ ଶେଷ କରିଦେଲା । ବାଇଗଣଟିକ ମୁହଁରେ ଦେଲି । ସେ ଯେ କେଡ଼େ ଖୁସିହେଲା କହିବି କେମିତି ! ତା'ର କୃତଜ୍ଞତା, ତା'ର ଆନନ୍ଦ, ତା'ର ମୋ

ପ୍ରତି ଆକର୍ଷଣ ସବୁଯାକ, ମହାଭାରତ ରାମାୟଣ ଭଳି କି ତାଠୁଁ ବଳି ଗ୍ରନ୍ଥମାନ– ତା'ର ଛୋଟ ଛୋଟ ଆଖିଯୋଡ଼ିକରେ ଯେମିତି ଆରମ୍ଭ ହୋଇ ଶେଷହୋଇଯାଇଛି । ତା'ମନର କଥା କହିବାପାଇଁ ତା' ଆଖିଯୋଡ଼ିକ ମୋ ପାଇଁ ଯଥେଷ୍ଟ ।

ଆଉ ଆଣିବି ?– ପଚାରିଲି ।

ସେ ତୁନିହୋଇ ରହିଲା । ଦେଇଥିଲେ ଖାଇଥାନ୍ତା କି କ'ଣ । କିନ୍ତୁ ମୁଁ ନିଜେ କହିଲି– ନାଇଁ, ସେତିକି ଖାଇଥା ଏଇଲେ– ପୁଣି ଆଉ ଟିକେ ଛାଡ଼ି ଆଉ ଟିକେ ଦେବି । ଏକାଥରକେ ବେଶି ଖାଇଲେ ବାନ୍ତି ଦେଖେଇବ ।

X X X X

ଜର ଛାଡ଼ିନଥିଲା । ତହିଁ ଆରଦିନ ତା'ରି ଉପରେ ପୁଣି ଆସିଲା ଜର । କମ୍ପ ହେଲା ଭାରି ଜୋର୍‌ରେ । ସେ ଗୋଟିପଣେ ଥରିଲା ପଡ଼ି । ଦାନ୍ତଗୁଡ଼ାକ ଠକ୍ ଠକ୍ ବାଜୁଥାଏ । ମୁଁ ଘରୁ କମଳ ରେଜେଇ ମୋର ଯାହା ଥିଲା ଆଣି ଘୋଡ଼େଇଦେଲି । ଗୋଟାଏ ଲୋକକୁ ମାଡ଼ିବସିବାକୁ କହିଲି; କିନ୍ତୁ ଏଡ଼େ ଜୋର୍‌ରେ କମ୍ପ ହେଲା ଯେ ସେ ଆଉ କିଛି ମାନିଲା ନାହିଁ । ମୁଁ ତରତର ଗରମ ପାଣି ମରିଚଚୂରା ଆଣି ପିଆଇଦେଲି– କମ୍ପ କମିଯିବ ବୋଲି । ତାକୁ ବି ଶୁଣିଲାନାହିଁ । ସବୁ ବାନ୍ତି କରିପକେଇଲା ଟିକିଏ ପରେ । ଇଟାଟାଏ ଗରମ କରି ଆଣି ତା ତଳିପାରେ ସେକଦେଲି । ଏଥର କମ୍ପ କମିଆସିଲା । ସେ ଟିକିଏ ସ୍ଥିର ହେଲା । ମୁଁ ବି ନିଃଶ୍ୱାସ ମାଇଲି । ଜର ଘୋଟିଯାଇଥାଏ ଦିହରେ । ହାତ ଦେଇହେଉ ନଥାଏ । ମଥାରେ ଜଳପଟି ଦେବାକୁ ଜଣକୁ କହିଲି । ସେ ତାକୁ ଅଧା ଗାଧୋଇ ପକାଇଲା । ତକିଆ ବିଛଣା ସବୁ ଓଦା କରି ବସିଲା । ତକିଆ ଚଦର ବଦଳକରି ମୁଁ ନିଜେ ପଟି ଦେଲି । ମୁଁ ତା ପାଖରେ ବସିଥାଏ । ତା ଦିହକୁ ମୋ ଦିହ ଲାଗିଥାଏ । ସେ ଆଖିବୁଜି ପଡ଼ିଥାଏ । ଚୁଲିକନ୍ଧା ଉପରେ ବିରାଡ଼ି ଯେମିତି ଉଷୁମ ପାଇ ପଡ଼ିଥାଏ, ସେଇମିତି ।

ଜରର ତାପ ଟିକିଏ କମିଆସିଲାରୁ ମୁଁ ଉଠିବାକୁ ବସିଲି । ମୋ ଉଠିବା ଦେଖି ସେ ଏମିତି କରୁଣ ଦୃଷ୍ଟିରେ ମୋତେ ଚାହିଁଲା ଯେ ମୋର ଆଉ ତା'ପାଖ ଛାଡ଼ି ଆସିବାକୁ ମନହେଲାନାହିଁ । କିନ୍ତୁ ଏତେବେଳଯାଏଁ ଗୋଟାଏ ବାହାର ଲୋକ ପାଖରେ– ସେ ଯେଡ଼େ ବଡ଼ ରୋଗୀ ହେଉପଛେ, ବସିରହିବାଟା ସୁନ୍ଦର ଦିଶୁନଥିଲା । ମୁଁ ଆସିବାକୁ ବାଧ୍ୟ ହେଲି ।

ଯାଉଛି –ତାକୁ ପଚାରିଲି ।

ଯିବେ ?

ଏଇ 'ଯିବେ' ପଦଟିର କେତେ ଯେ ମାନେ ଥିଲା, ମୁଇଁ କେବଳ ତା ବୁଝିପାରିଲି ।

ମୁଁ ଗଲି । ତା ପାଖରୁ ଆସି କିନ୍ତୁ ଆଉ କେଉଁ କାମରେ ମନଲାଗିଲାନାହିଁ ।

ଥିର୍‌କି ଯାଇଁ ବିଛଣାରେ ପଡ଼ିରହିଲି । ଭାବିଲି, ଗୋଟାଏ ବାହାର ଲୋକ ପାଇଁ ମନଟା ଏତେ ଗୋଳେଇଘାଣ୍ଟି ହେବାଟା ତ ଭଲ ନୁହେଁ– ଉଚିତ ନୁହେଁ ।

ଖିଡ଼ିକିବାଟେ ସୂର୍ଯ୍ୟକରିଣରୁ ଖଣ୍ଡେ ଛିଟିକିଆସି ତାଙ୍କ ଫଟୋ ଉପରେ ପଡ଼ି ଚିକିମିକି ମାରୁଥାଏ– ଦେଖି ହେଉ ନ ଥାଏ ଫଟୋକୁ ।

ଭିକାରି ବାହାର ଲୋକ କାହିଁକି ହେବ ? ମୁଁ ଆସିବା ଆଗରୁ ସେ ଯାଙ୍କ ଘରେ ଅଛି । ତାଙ୍କର ସେ ଏଡ଼େ ବିଶ୍ୱାସୀ ଲୋକ ଥିଲା । ତା' ପାଖରେ ବେଶି ବେଳ ବସିବାଟା ଏମିତି ଗୋଟାଏ ଅସୁନ୍ଦର କଥା କ'ଣ ?

ଟିକିଏ ନିଦ ଲାଗିଆସିଲା । ଆଖି ପିଛା ପଡ଼ିଛି କି ନାହିଁ, ମୋର କାହିଁକି ମନେ ହେଲା ଭିକାରି ଯେମିତି ଯନ୍ତ୍ରଣାରେ ଛଟପଟ ହେଉଛି ।

ନିଦ ଭାଙ୍ଗିଗଲା । ମୁଁ ନିଜେ ହସିଲି । ନିଜର ଦୁର୍ବଳତାକୁ ଥଟ୍ଟାକଲି । ଯାହା ସାଙ୍ଗରେ ମୋର କୌଣସି ସଂପର୍କ ନାହିଁ ତା ପାଇଁ ମନର ଏ ଉଗୁରି ଦେଖି ମୁଁ ବିରକ୍ତ ବି ହେଲି । ମୁଁ ପୁଣି ଶୋଇବାକୁ ଚେଷ୍ଟାକଲି ।

ମୁଁ ଶୋଉଛି, ସତକୁ ସତ ଜଣେ ଆସି କହିଲା– ଭିକାରି ଗଁ-ଗଁ ହୋଇ ଗଡୁଛି । ମୁଁ ଚଟ୍‌କିନି ଉଠି ଦଉଡ଼ିଗଲି ତା ପାଖକୁ । ଆସି ଯା' ଦେଖିଲି ମୋ ଛାତି ଥରିଉଠିଲା । ଭିକାରିର ଚେତାନାହିଁ । କେବଳ ଗଁ-ଗଁ ହୋଇ ଗଡୁଛି । ନିଶ୍ୱାସ ଘନ ଘନ । ମୋତେ କିଛି ବୁଦ୍ଧି ଦିଶିଲାନାହିଁ । ମୁଁ ବିଭୂତି ବିଭୂତି ବୋଲି ହୁରିକଲି । ବିଭୂତି ଘରେ ନଥିଲେ । ସାନବୋହୂ ଦଉଡ଼ିଆସିଲା । ବାପାଙ୍କୁ ଖବରଦେଲି । ସେ କହିପଠେଇଲେ ରାତିରେ କିଏ କ'ଣ କରିବ– ଡାକ୍ତର ନା କବିରାଜ ଏଠି ? ଡାକ୍ତରଖାନା ଦୁଇକୋଶ ।

ମୋ ବୁଦ୍ଧି ହଜିଗଲା । ଚିନ୍ତାର ଖିଅଗୁଡ଼ିକ ଛିଡ଼ି ଟିକିଟିକି ହୋଇଯାଉଥିଲା । ମୁଁ ପାଣ୍ଡୁକୁ କହିଲି– ତୁ ବିଶୁଆ ପାଣକୁ ସାଙ୍ଗରେ ନେଇ ଦଉଡୁ ଡାକ୍ତରଖାନାକୁ । ଡାକ୍ତରକୁ ଡାକିଆଣିବୁ –କହିବୁ ଯାହା ନେବେ ଚିନ୍ତାନାହିଁ ।

ସେ ଗୁଁ-ପୁଁ ହେଲା । ଦେଖିଲି କାହାରି ଯେମିତି ଖାତିର୍ ନାହିଁ– କେହି ଯେମିତି କଥାଟାକୁ ବଡ଼ବୋଲି ଭାବୁନାହାନ୍ତି । ମୋ'ର ଯେମିତି କ'ଣ ଭାସିଯାଉଛି– ମୋ'ରି ଘର ପୋଡ଼ିଯାଉଛି । ସେ ଘର ପୋଡ଼ିଗଲେ ଯାହା ଯିବ, ମୋ'ରି ଯିବ ।

ଆଉ କାହାରି କିଛି ହେବନାହିଁ ।

ଯିବୁ ନାହିଁ ?– ମୁଁ ପାଣ୍ଡୁ ଉପରେ ରାଗିଲି ।

ଏତେ ରାତି– ସେ ହିଙ୍ଗିଲା ।

ମୁଁ କହିଲି– ପାଣ୍ଡୁ, ଭିକାରି କ'ଣ ମରିଯିବ ?

ମୋ ବିକଳ ଦେଖି ତା କଣ୍ଠରେ ଦୟା ବସିଲା କି କ'ଣ, ସେ ଗଲା । ମୁଁ ତାକୁ ବାରବାରକି କହିଲି– ଯେମିତି ହେଉ, ଡାକ୍ତରକୁ ସାଙ୍ଗରେ ନେଇ ଆସିବୁ ।

X X X X

ଡାକ୍ତର ଆସିଲା । ମୁଁ କବାଟ ଏପାଖରେ ଥାଇ ଚାହିଁଥାଏଁ । ରୋଗୀକି ଦେଖିସାରି ଡାକ୍ତର 'ଫଁ' କରି ଗୋଟାଏ ନିଃଶ୍ୱାସ ଛାଡ଼ି ବସିପଡ଼ିଲା । ମୁଁ ବୁଝିପାରିଲିନାହିଁ, ମୋର କ'ଣ ହୋଇଗଲା ସେତେବେଳେ ।

ମୁଁ ଏପାଖରୁ ଥାଇ ଡାକ୍ତର ଶୁଣିପାରିବା ଭଳି ଗଳାରେ କହିଲି– ଡାକ୍ତର ବାବୁଙ୍କୁ କହ, ଯିମିତି ହଉ ତାକୁ ଭଲକରିଦିଅନ୍ତୁ ।

ଆଉ କହିବାକୁ ଯାଉଥିଲି– ସେ ଯାହା କହିବେ– ମୁଁ ତା' ଦେବି– ତାକୁ ବଞ୍ଚାନ୍ତୁ– ତାର କେହିନାହିଁ– ବାପ ମା' କେହିନାହାନ୍ତି ଏଠି– ଗରିବ ପିଲାଟିଏ– ତାକୁ ଭଲ କରିଦିଅନ୍ତୁ– ଭଗବାନ ତାଙ୍କ ପୁଅଝିଅଙ୍କୁ ଆଇଷଦେବେ ।

କିନ୍ତୁ ଏସବୁ ମନେ ମନେ ରହିଗଲା । ପାଟିରୁ ବାହାରିପାରିଲାନାହିଁ । ମୁଁ ଚାକର ହାତରେ ପାଞ୍ଚଟଙ୍କା ପଠାଇଦେଲି ।

ଆହା ଟଙ୍କା ନେବାଟା କ'ଣ ବଳେଇପଡୁଥିଲା– ପରେ ଦେଇଥିଲେ କ'ଣ ହେଇ ନଥାନ୍ତା ! କହି ଡାକ୍ତରବାବୁ ସହଜରେ ଟଙ୍କାକୁ ପାକିଟିରେ ପକେଇ ଉଠିଲେ । ମୁଁ ପଚାରିଲି– କ'ଣ ଦେଖିଲେ ?

ଏତେଦୂର ହେଲାଣି ମୋତେ ଟିକିଏ ଖବର ଦେଲେନାହିଁ– ରୋଗୀ ତ ବର୍ତ୍ତମାନ– ଆଚ୍ଛା ଚେଷ୍ଟା କରି ଦେଖାଯାଉ । ଗୋଟାଏ ଲୋକ ପଠାନ୍ତୁ ମୋ ସାଙ୍ଗରେ ଔଷଧ ନେଇ ଆସିବ । ମୁଁ ଅବିକା ଗୋଟାଏ ଇନ୍‌ଜେକ୍‌ସନ୍ ଦେଇଯାଉଛି– କାଲି ଆଉ ଗୋଟାଏ ଦେବାକୁ ହେବ– ।

ଡାକ୍ତର ଚାଲିଗଲେ । ମୁଁ ରାତିଟାଯାକ ତା'ରି ପାଖରେ ବସିଥାଏଁ, ଔଷଧ ଦେଉଥାଏଁ । ମନ ମୋର ଶକ୍ତ ହେଇ ଆସିଥିଲା । ଆଉ କାନ୍ଥବାଡ଼ ମୋ ଗତିବିଧିକୁ ଚାହିଁ ନଥିଲେ । ଦୁଆର ଝରକା ମୋ ମନକଥାକୁ ଶୁଣିବାପାଇଁ କାନପାରିନଥିଲେ । ମୋ ଛାଇ ମୋତେ ସନ୍ଦେହ କରି ପଛେ ପଛେ ଗୋଡ଼ାଉନଥିଲା । ମୁଁ ଜବର ହେଇ ମୋ ଜାଗାରେ ବସିଥିଲି । ବାହରକୁ ଡର ଥାଏ– ଏକାବେଳକେ ନଥାଏ ବୋଲି ନୁହେଁ । କିନ୍ତୁ ଭିତରର ଏ ପ୍ରବଳ ଅନୁଯୋଗ ତାକୁ ଚାପି ବସିଥାଏ ।

ଟିକିଏ ଢୋଳେଇପଡ଼ିଲି । ସପନରେ ଦେଖିଲି, କିଏ ଜଣେ ମୋତେ ଆସି କହୁଛି– ଆଉ ଘରେ ସିଏ ଛଟପଟ ହେଉଛନ୍ତି–ବଡ଼ ବେମାର । ମୁଁ ଉଠିଯାଉଛି– ଭିକାରି ଡାକିଲା– ଅପା ! ମୁଁ ଫେରିପଡ଼ିଲି । ତା କାତର ଡାକ ଶୁଣି ମୁଁ ପଳେଇଯାଆନ୍ତି କେମିତି ? ମୁଁ ତା ପାଖକୁ ଗଲି । ସେ ମୋତେ କୁଣ୍ଢାଇଧରି କହିଲା– ଅପା, ମୁଁ ମରିଯିବି– ତମେ ମୋତେ ଛାଡ଼ିଦେଇଗଲେ ମୁଁ ମରିଯିବି ।

କହିଲି– ମୁଁ ଆସୁଛି ଏଇଲେ । ତାଙ୍କୁ ଟିକିଏ ଦେଖିଆସେଁ ।

ନା– ନା– ମୋତେ ଛାଡ଼ି ଯାଆନା । ସେ ମୋତେ ଆକଟକରି ଧଇଲା ।

ଏତିକିବେଳେ ଆଉ ଜଣେ ଆସି କହିଲା– ବାବୁ ଚାଲିଗଲେ । ମୁଁ ଚିତ୍କାର କରି ଉଠିଲି । ମୋ ଦେହଟା ଥରୁଥାଏ । ନିଦ ଭାଙ୍ଗିଗଲା ।...

ରାତି ପାହିଆସୁଥାଏ । ତାର ଚେତନା ଫେରିଆସିଲା ପରି ଜଣାଗଲା– ସେ ମା ମା ବୋଲି ମୁଣ୍ଡ ଗଡ଼େଇଲା । ମୁଁ ତା ପାଖକୁ ଯାଇ ଡାକିଲି– ଭିକାରି ! ସେ ମୋତେ କୁଣ୍ଢେଇପକେଇଲା । ମୋତେ ଠିକ୍ ଭଲଲାଗିଲା କି ନାହିଁ କହିପାରୁନାହିଁ– ତେବେ କେମିତିକା ଅସ୍ୱାଭାବିକ ବୋଧହେଲା ।

ଆଖିରୁ ତା'ର ଧାର ଧାର ଲୁହ ବୋହିଯାଥାଏ । ମୁଁ ସେ ଲୁହକୁ ମୋ ପଣତରେ ପୋଛିଦେଇ ତା ପିଠି ଆଉଁସିଦେଲି ।

ତାର ଚେତନା କ୍ରମେ ଫେରିଆସିଲା । ସେ ମୋତେ ଚିହ୍ନିପାରିଲା ଭଳି ଚାହିଁଲା । ତାର ରୋଗ– ଦୁର୍ବଳ ଅବଶ ହାତଟା ମୋ କୋଳ ଉପରେ ପଡ଼ିରହିଲା । ମୁଁ ସେ ହାତକୁ ଖୁବ୍ ଧୀରେ ଧୀରେ ଆଉଁସିଦେଲି । ମନେହେଉଥିଲା, ମୋର ହାତଠାରୁ ତାର ଦେହ ଯେମିତି ଆହୁରି ନରମ ।

ସେ ଆଖି ବନ୍ଦକରି ଆଉଁସାର ଆରାମ ଉପଭୋଗ କରୁଥିଲା । ଧୀରେ ଧୀରେ ଆଖିଖୋଲି ସେ କ'ଣ କହିବାକୁ ଚାହିଁଲା– କହିପାରିଲାନାହିଁ । ମୁଁ ପଚାରିଥାନ୍ତି କ'ଣ କହୁଛ ? କିନ୍ତୁ ମୋତେ ବି କାହିଁକି ସଂକୋଚ ବୋଧହେଲା ।

ସେ କିଛିକ୍ଷଣ ପରେ ପୁଣି ଥରେ କହିବାକୁ ଚେଷ୍ଟାକଲା । ଏଥର ସେ କହିବାପାଇଁ ଯାହା ପେଟ ଭିତରେ ରହିଥିଲା ସବୁଯାକ ଯେମିତି ଆଣି ଜିଭ ଆଗରେ ଠୁଳକରି ରଖିଲା । ତା' ମୁହଁଟା ଫୁଲିଉଠିଲା । ବଡ଼ କ୍ଷୀଣ କଣ୍ଠରେ ସେ ବଡ଼ କଷ୍ଟରେ କହିଲା– ଅପା, ତମେ ମୋ....

–ଏତକ କହି ସେ କାନ୍ଦିପକାଇଲା । ଆଉ କହିପାରିଲା ନାହିଁ । କିନ୍ତୁ ନ କହିଲେ ସେ ଯେମିତି ଥୟଧରି ରହିପାରିବନାହିଁ ! ସେ ପୁଣି ନିଜକୁ ସମ୍ଭାଳି ନେଇ କହିଲା ମୋର ମା ନାହିଁ– ଅପା, ତମେ ମୋର ମା-ଆ !

ସେ ଭୋ-ଭୋ ହୋଇ କାନ୍ଦିଲା । ମୁଁ ତାକୁ ସାନ୍ତ୍ୱନା ଦେଇ କହିଲି– ହଁ, ହଁ,– ମୁଁ ତମ ମା ।

କିନ୍ତୁ ମୋର ଠିକ୍ ମନେହେଲା ମୁଁ ଆଉ କ'ଣ କହିବାକୁ ଯାଇ ଆଉ କ'ଣ କହିଦେଲି ପରା ! କିନ୍ତୁ ମୁଁ ବୁଝିପାରିଲି, ମୁଁ ଯାହା କହେ ପଛେ ମୋର ଯାହା କହିବାର କଥା ସେଟା ତା' ଦିହରୁ ବେଶ୍ ବୁଝାଯାଉଥିବ ।

X X X X

ଭିକାରିର ମା ନାହିଁ– ମୁଁ ଜାଣେ ଏକଥା । କିନ୍ତୁ ସେଟା ଏବେ ଯେତେ ଭଲକରି ଜାଣିଲି, ସେମିତି ଆଉ ଜାଣିନଥିଲି କେବେ ।

ମଣିଷର ଯଉଁ ଜିନିଷଟା ନାହିଁ, ସେଥିପାଇଁ ମନ ଖରାପ ହୁଏନାହିଁ ତାର; ଯଉଁ ଜିନିଷଟାକୁ ସେ ପାଇବବୋଲି ମନକରେ, ତା'ରିପାଇଁ ସେ ଘାଣ୍ଟିହୁଏ । ଭିକାରିକି ମୋର ସେଥିପାଇଁ ଦୟା ହେଲା । ଭିକାରିକି ସେଥିପାଇଁ ମୁଁ ଆପଣାର ବୋଲି ଭାବିବାକୁ ଲାଗିଲି । ଭିକାରିକି ସେଥିପାଇଁ ମୁଁ ଭଲପାଇଲି ।

X X X X

ବିଭୂତି ବସି ଭାତ ଖାଉଥିଲେ । ପୂଝାରୀ ପରଷୁଥିଲା । ସାନବୋହୂ ପାଖରେ ବସିଥିଲା । ମୁଁ ଆଉ ଅତି ପାଖକୁ ନଯାଇ ଦୂରରୁ ଠିଆହୋଇ ସାନବୋହୂକୁ ଗାଳିଦେଲି– ମାଛି ବସୁଛି ଭାତରେ– ପଙ୍ଖାଟା ଆଣି ବିଞ୍ଚି ଦେ !

ସାନବୋହୂ ଉଠିଗଲା । ମୁଁ ବିଭୂତି ପାଖକୁ ଯାଇ ପଚାରିଲି– ତୁଣ କେମିତି ହେଇଛି ?

ହେଇଛି– ମନ୍ଦ ନୁହେଁ । –ବିଭୂତି ଉତ୍ତରଦେଲେ ।

ନୂଆ ପୂଝାରୀ— ହାଉଲେ ହାଉଲେ ଶିଖିଯିବ ଯେ । ପହିଲୁ ପହିଲୁ ଯାହା କଲା— ଛି— କିଏ ମୁହଁରେ ଦବ ସେ ତୁଣ ! ଏବେ ଆଉରି ଟିକିଏ ବାଗକୁ ଆସିଛି ।

ବିଭୂତି ଆଉ କିଛି କହିଲେନାହିଁ । ସାନବୋହୂ ପଙ୍ଖା ନେଇ ଆସିଲା । ମୁଁ ବି ସେଠୁ ଚାଲିଆସିଲି ।

ଆସି ଦେଖିଲି ଭିକାରି ଶୋଇଛି । ଗାଧୋଇପାଧୋଇ ଆସି କାହାରିକି କିଛି ନ କହି ସେମିତି ଶୋଇଛି । ମୁଁ ପୂଝାରୀକି ପଚାରିଲି— ଭିକାରି ଖାଇଛି ? ପୂଝାରୀ ନାହିଁ କଲା । ରାଗରେ ମୋ ହାଡ଼ ଜଳିଗଲା ।

କିନ୍ତୁ କାହା ଉପରେ ରାଗିବି ? ନିଜେ ନିଜକୁ ଶାନ୍ତ କଲି । ଭାବିଲି— ମୋର ଯେ ରାଗିବାର ଅଧିକାର ନାହିଁ— ମୁଁ ବିଧବା ! ମୋର ଘରରେ ଦାବି ନାହିଁ - ସମ୍ପତ୍ତିରେ ଦାବି ନାହିଁ— କିଛିରେ କିଛି ନାହିଁ ମୋର । ମୋର କେବଳ ଗଣ୍ଡିଏ ଖାଇବାର ଅଧିକାର — ସେତିକି ମୋର ଦାବି— ସେତିକି ମୋର ହକ୍ । ଗାଈଗୋରୁଙ୍କ ଭଳି ଖଟି ଖାଇ ପଡ଼ିଥିବି । କାମନକଲେ ନଖଟିଲେ ହୁଏତ ଦୁନିଆରେ ଆଉ ପାଞ୍ଚ ଜାଗାରେ ଯେମିତି ହୁଏ ମୋ ଦଶା ବି ସେଇୟା ହେବ— ଦାନାଗଣ୍ଡାକ ବି ବନ୍ଦ ହୋଇଯିବ— ଏଟା ଗୋଟେ ବଡ଼ କଥା ନୁହେଁ— ଆଶ୍ଚର୍ଯ୍ୟ ଘଟଣା ନୁହେଁ । ଯାହାର ସ୍ୱାମୀ ନାହିଁ— ତାର କିଛି ନାହିଁ । ତାର କାମର କିମତ୍ ନାହିଁ କି କଥାର ଦର ନାହିଁ । ଧର୍ମ, ସମାଜ, ନ୍ୟାୟ, ନୀତି କେହି ତା' ପକ୍ଷ ନେବେନାହିଁ । ବିଧବାର ଦୁଃଖ ଯନ୍ତ୍ରଣା, ହୃଦୟ ମନ, ଏପରି କି ଜୀବନ ମଧ ଗୋଟାଏ ପାଖରେ— ଆଉ ଏଇ ଧର୍ମ, ଏଇ ସମାଜ, ଏଇ ନ୍ୟାୟ ନୀତିସବୁ ଆଉ ଗୋଟାଏ ପାଖରେ । ବିଧବା ଜୀବନର ଏଇ ସମସ୍ତ ଅସଙ୍ଗତିକୁ ନେଇ ବିଧବା ସଂସାରରେ ବଞ୍ଚିରହେ । ତାକୁ ନମାନି ନଧରି ପଦେ ଏପାଖ ସେପାଖ ହେବାର ଜୁ ନାହିଁ । ହେଲାକ୍ଷଣି ସମସ୍ତେ ତା ଉପରେ ଚଢ଼ିବସିବେ । ଏଇ ଧର୍ମର ଧାରଣା, ଏଇ ସମାଜର ଶାସନ ଜୀବନକୁ ପଙ୍ଗୁ କରିପକାଏ । ସେ ନମାନି ଯିବ କୁଆଡ଼େ ?

ମୁଁ ବୁଝିପାରିଲି ଘରେ ମୋର ସ୍ଥାନ କେଉଁଠି । କିନ୍ତୁ ତାକୁଇ ଭଲଭାବରେ ଦିହକୁ ନେଇ କାମ କରିବାଟା ମୋ ପକ୍ଷରେ ବଡ଼ ସହଜ ହେଇ ଉଠୁନଥିଲା । ସେଥିପାଇଁ ମୁଁ ରାଗିଲି । ପୂଝାରୀକି ଯାହା ଇଚ୍ଛା ତା' ବକିଲି । ମୋତେ ଲାଗିଲା ଯେମିତି ଭିକାରିକି ମୁଁ ଭଲପାଏ ବୋଲି— ଭିକାରି ଆଜି ଗୋଟିଏ ରାଣ୍ଡର ସମ୍ବଳ ବୋଲି ତା ପ୍ରତି ଏତେ ଅବହେଳା, ଏତେ ଅନାସ୍ଥା— ଏଡ଼େ ତୁଚ୍ଛ ଭାବ । ଏମିତି କି ଚାକରବାକରଙ୍କ ଆଖିରେ ବି ଗୋଟେ ନିଉଛୁଣା ମଣିଷ ସେ । ଆଉ ସେଇଟା ତାର ଦୋଷ ଯୋଗୁଁ ନୁହେଁ— ସେ କଉଣସି ଅପରାଧ କରିଛି ବୋଲି ନୁହେଁ — ସେ ଯେ ମୋ ଆଶ୍ରିତ ଲୋକ— ଖାଲି ଏଇଥିପାଇଁ । ମୁଁ ଯେମିତି ଏ ଘରର କେହି ନୁହେଁ । ମୋର ଯେମିତି ଏ ଘରେ କିଛି ଦାବି ନାହିଁ ।

କାହିଁକି ଏତେବେଳଯାଏ ତାକୁ ଭାତ ଦେଇନା ? ମୁଁ ପୂଝାରୀ ଉପରେ ରାଗିଲି ।

—ମୁଁ କ'ଣ କରିବି— କେତୁଟା ହେଁ କି ଆଉ— ବାବୁ ପରା ଖାଉଥିଲେ ?

ପୂଝାରୀ ମୋ ମୁହଁରେ ଜବାବଦେଲା ? ମୁଁ ରାଗରେ ଥରିଗଲି । ବିଭୂତି ହାତ ଧୋଉଥାନ୍ତି । ପୂଝାରୀ କଥା ସେ ଶୁଣିଲେ; କିନ୍ତୁ କିଛି କହିଲେନାହିଁ । ମୋର ଆହୁରି ରାଗ ହେଲା ।

ମୁଁ କହିଲି– ନାଇଁ ସେ ଖାଇବନାହିଁ । ବିଭୂତି ଦାଣ୍ଡକୁ ଚାଲିଗଲେ ।

ସାନବୋହୂ ଆସି ପଚାରିଲା– କ'ଣ ହେଲା ? ମୁଁ ତା କଥାକୁ ନଶୁଣି ସେଠୁ ଚାଲିଗଲି । ବାକ୍ସରୁ ପଇସା କାଢ଼ି ଆଣି ଭିକାରିକୁ ଯାଇ ଡାକିଲି । କହିଥାନ୍ତି– ଯା' ତମେ ଚୁଡ଼ାଗୁଡ଼ କିଣି ତେଣେ ଖାଇବ – କିନ୍ତୁ ପାରିଲି ନାହିଁ । ଏଡ଼େ ବଡ଼ ଗୋଟାଏ ଘର– ଏଡ଼େ ନାଁ– ଭାଙ୍ଗିଚୂରି ଧୂଳିହେଇଯିବ– ଏତେ ଟିକିଏ କଥାରେ । ଗୋଟିଏ ଲୋକ ମୁଁ, ମୋରି ତ୍ୟାଗରେ ମୋରି ଦୁଃଖ-କଷ୍ଟ ଉପରେ– ମୋରି ଦେହ-ମନ-ପ୍ରାଣକୁ ବଳି ଖାଇ ସେ ଯଦି ଠିଆହୋଇ ରହିପାରିବ ରହୁ– ସେଇ ମୋର ଢେର୍– ସେଇଥିରେ ମୋର ଗୌରବ । ଯଦି ମୁଁ ସେଇଟିକୁ ବଡ଼ ମନେକରି ନ ପାରୁଛି ତେବେ ଏବେ ଏଣିକି ବଡ଼ ମନେକରି ଶିଖିବି ।

କହିଲି– ଖାଇବ ଯା । ଏଠି ପେଲି ପଶି କରି ନଗଲେ ଭକୁଆହେଇ ବସିଥିବ । ଦେଖୁଛ ତ ଢଙ୍ଗ ଏ ପୂଝାରୀ ଚାକରଙ୍କର ! କେଉଁ ପହରୁ ରନ୍ଧାବଢ଼ା ସରିଲାଣି– ଏତେବେଳଯାଏ ଡାକି ଭାତଗଣ୍ଡେ ଦେବାକୁ ତର ହେଲାନାହିଁ ! ଆସ, ଆସ ଖାଇ ଯା ।

ସେ ଖାଇଲା । ମୁଁ ଆଉ ସେଠି ରହିପାରିଲିନାହିଁ । ଏତେ ବେଶି ଜଣକପାଇଁ ବ୍ୟସ୍ତ ହେବାଟା ମୋ ପକ୍ଷରେ ଖରାପ ବୋଲି ସମସ୍ତେ କହିବେ ।

X X X X

ବିଭୂତି କଟକରୁ ରସଗୋଲା ଆଣିଥିଲେ । ମୁଁ ରସଗୋଲା ଆଟିକାଟି ଆଣି ବିଭୂତି ଆଉ ଭିକାରି ଭାତ ଖାଇସାରିଲେ ପରଷିବି ବୋଲି ବସିଛି । ଦୁହେଁଯାକ ପାଖପାଖ ହୋଇ ବସିଥାନ୍ତି ।

ରସଗୋଲା ନେଇ ଦେବାବେଳେ ମୋ ମନ ଭିତରେ ଅନେକଗୁଡ଼ିକ କଥା ଆସି ଗୋଳେଇଘାଣ୍ଟି ହୋଇଗଲା ପରି ଲାଗିଲା । ମୁଁ ଆଗ ବିଭୂତି ଥାଳିରେ ନେଇ ଯୋଡ଼ିଏ ଦେଲି, ତା ପରେ ଭିକାରିକୁ ।

ଦେଇସାରି ଅଡୁଆ ମନକୁ ଫିଟାଇବାକୁ ବସିଲି । ଭାବିଲି, ବିଭୂତିକୁ ଆଗ ଦେବା ମୋର ଭୁଲହେଲା କି ? ବିଭୂତି ଘରର ଲୋକ, ତାକୁ ଆଗ ନଦେଇଥିଲେ ବି ସେ କିଛି ମନେକରିନଥାନ୍ତେ ? ସତ ସତ ସେ ମୋର ବେଶି ଆପାଣାର ଭିକାରିଠୁଁ ?

ବିଭୂତିକି ଆଗ ଦେଲି ବୋଲି ଭିକାରି କ'ଣ ସତରେ କିଛି ମନରେ ଭାବୁଥିବ ! କାହିଁ ତା ମୁହଁରେ ତ ସେମିତି ଭାବ ଦେଖିଲିନାହିଁ । କେଡ଼େ ଭଲ ମଣିଷ । ମୁଁ ଜାଣେ ସେ ଭଲ ମଣିଷ । କିନ୍ତୁ ବିଭୂତି କ'ଣ ଭାବିଥାନ୍ତା । ହୁଏତ ଭାବିଥାନ୍ତା– ମନେ ମନେ କହିଥାନ୍ତା– ଭିକାରି ତାଙ୍କର, ତାକୁ ଭାଇ ଆଣି ରଖିଥିଲେ– ସେ ତାଙ୍କ ଆଶ୍ରିତରେ ଅଛି– ଭିକାରିକି ନୂଆବୋଉ ସେଥିପାଇଁ ବେଶି ଭଲପାଆନ୍ତି– ସେଥିପାଇଁ ଆଗ ଦେଲେ । ନା– ନା, ସେ

ତା' ଭାବିବନାହିଁ । କିନ୍ତୁ ଭିକାରି ଯଦି ଭାବେ ଯେ ବିଭୂତି ରସଗୋଲା ଆଣିଥିଲା ବୋଲି ତାକୁ ଆଗ ଦେଲି !

ନା— ଭିକାରି ତା' କେବେ ଭାବିବନାହିଁ । ଭିକାରି ମୋତେ ଜାଣେ — ବିଭୂତିଠାରୁ ଆହୁରି ଭଲକରି ଜାଣେ ।

ମୁଁ ବିଭୂତିକି ଚାହିଁଲି— ଭିକାରିକି ଚାହିଁଲି । ଭାବିଲି, ସତେ କ'ଣ ବିଭୂତିଠାରୁ ଭିକାରି ମୋର ବେଶି ଆପାଣାର— ବେଶି ନିକଟର ? ନା— ନା, ତା' ହୋଇପାରେନା— ବିଭୂତି ମୋର ଆପଣାର— ବିଭୂତି ପର ହେବ କେମିତି ?

ଆଉ ଭିକାରି ! ସେଇ ସରଳ ଆଖି— ସେଇ ସରସ ରୂପ— ନା— ନା, ଭିକାରି ମୋର ବେଶି ଆପଣାର ।

ପୁଣି ଭାବିଲି, ବିଭୂତି ଯେ ମୋ ଦିଅର— ସେ ବେଶି ନିଜର ନହୋଇ ବାହାରର ଲୋକ ଏ ଭିକାରିଟା ପୁଣି କେମିତି ନିଜର ହେବ ମ ?

କିନ୍ତୁ ମଣିଷ କ'ଣ କେବଳ ସମ୍ପର୍କ ନେଇ ଆପଣା ପର ସମ୍ବନ୍ଧ ବାନ୍ଧିବସେ ? ତା' ହେଲେ ମଣିଷ ଯେ ଏଡ଼େବଡ଼ ଶକ୍ତି— ଏଇ ମନଟା ଏହି ସାମାଜିକ ସମ୍ପର୍କ ସାମନାରେ ପରାଜୟ ମାନିଯିବ ।

ମୁଁ ଭିକାରିକି ଚାହିଁଲି । ମୋ ମନ ଡାକୁଥିଲା ଭିକାରି ମୋର ବେଶି ଆପଣାର । କିନ୍ତୁ ସାମାଜିକ ଧାରଣା ପାରିପାର୍ଶ୍ୱିକ ପ୍ରଭାବ ଜବରଦସ୍ତି କରୁଥିଲା ମନାଇବାକୁ ଯେ ବିଭୂତି ମୋର ବେଶି ଆପଣାର ।

କିନ୍ତୁ ବିଭୂତି ତାଙ୍କ ଭାଇ । ଯାହାକୁ ଦିନେ ମୁଁ ଦେବତା କରି ପୂଜା କରୁଥିଲି— ଆଜିଯାଏ ଯାହାକୁ ପୂଜା ଦେଇଆସୁଛି ମନେ ମନେ, ତାଙ୍କ ସହିତ ବିଭୂତିର ଯେଉଁ ସମ୍ବନ୍ଧ ଭିକାରି ତା'ଦାବି କରିନପାରେ ।

ତଥାପି— ତଥାପି— ମୋ ମନ, ମୋ ଅନ୍ତର ସମସ୍ତେ ଯେପରି ବିଦ୍ରୋହ କରି ଉଠିଲେ— ନା— ନା, ଭିକାରିଠୁଁ ତୋର ବେଶି ଆପଣାର କେହି ନାହିଁ । ଏ ମନର ରୁଚି— ଭିତରେ ନିର୍ଦ୍ଦେଶ— ଦୈହିକ ସମ୍ବନ୍ଧର ଢେର ଉଚ୍ଚତର— ଦେହର ଶକ୍ତିଠାରୁ ଏ ଢେର ବଳଶାଳୀ ।

ବିଭୂତି— ଭିକାରି, ଭିକାରି— ବିଭୂତି !

ମୋ ଭିତରେ ଯେମିତି ଆଉ ଦୁଇଟା ଆଖି ଖୁବ୍ ଜୋର୍‌ରେ ଥରେ ଭିକାରିକୁ ଥରେ ବିଭୂତିକୁ ଚାହିଁ କେବଳ ଘୂରୁଥାଏ ପଡ଼ି, ଆଉ ବାହାରର ଆଖି ଯୋଡାକ ଜଳକାବାଣ ମାରିଥିଲା ପରି ଅର୍ଥଶୂନ୍ୟ ଭାବରେ କେଉଁଠି ଠାଏ ଏକଦୃଷ୍ଟିରେ ପଡ଼ିଥାଏ । ପିଲା ଯେମିତି ନାନାବାଈ ଗାଇ ମୁଣ୍ଡ ହଲାନ୍ତି, ଭିତର ଆଖି ସେମିତି ପାଗଳଙ୍କ ପରି ଥରେ ୟାକୁ ଥରେ ତାକୁ ଏମିତି ଘନଘନ ବିଜୁଳି ମାରିଲା ପରି ଚାହିଁ ଫେରିଆସୁଥାଏ । କ୍ରମେ ସେଟା ଏତେ ଘନ ଆଉ ଏତେ ଶୀଘ୍ର ହେଲା ଯେ, ବିଭୂତି ଆଉ ଭିକାରି ଦୁହେଁଯାକ ଗୋଳେଇ ହେଇଗଲା ପରି ଜଣାଗଲା ।

ଶେଷରେ ଭାବିଲି– ନାହିଁ, ପର ଆପଣାର କଥା ନୁହେଁ– ଯାହା ହବାର ହେଇଯାଇଛି– ଭଗବାନ୍ ଯାହା କରନ୍ତି ମଙ୍ଗଳପାଇଁ ।

X X X X

ଏ କାହା ଲୁଗା– ଏଠି କିଏ ଆଣି ପକେଇଛି ?

ବିଭୂତି ତାଙ୍କ ଦାଣ୍ଡ ବସିବାଘରୁ ଦୁଇ ତିନି ଖଣ୍ଡ ଲୁଗା ବାହାରକୁ ପିଙ୍ଗିଦେଲେ ।

ଇସ୍, କି ଅପରିଷ୍କାର, କି କଦର୍ଯ୍ୟ ସାର୍ଟ– କା'ର ଏ ?

ଖଣ୍ଡେ ଜାମା ଆସି ବାହାରେ ପଡ଼ିଲା ।

ଏ ବହି, ଏ ଖାତା ସବୁ ରଖିବାପାଇଁ କ'ଣ ଦୁନିଆରେ ଆଉ ଜାଗାନାହିଁ ?

ଖଣ୍ଡେ ବହି ଆଉ ଖଣ୍ଡେ ଦୁଇ ଖଣ୍ଡ ଖାତା ଆସି ତଳେପଡ଼ିଲା ।

ଆରେ, ବାପ୍‌ରେ ! ପୁଣି ବଇଁଶୀ– ବିନା ରାଧାରେ ବଇଁଶୀ ବାଜୁଚି ? ଏଇଠି– ଏଇ ଘରେ ଏସବୁ କାଣ୍ଡିମରା ହଉଚି କାହିଁକି ? ମଲା ମଣିଷ ଏ ଦାଉରେ !

ବଇଁଶୀ ଖଣ୍ଡକ ଦୁଇଖଣ୍ଡ କରି ବିଭୂତି ପିଙ୍ଗିଦେଲେ ।

ମୁଁ କଥାଟା ବୁଝି ମଧ ବୁଝିପାରୁ ନଥାଏ । ମନ ହେଉଥାଏ– ସେସବୁ ଗୋଟେଇ ଆଣି ରଖିଦେବି କି ? ପୁଣି ଡର ହେଲା, କାଳେ ବିଭୂତି କ'ଣ ଭାବିବେ ! ମୁଁ ଜାଣିପାରିଲି, ସେସବୁ ଭିକାରିର । ଭିକାରି ଘରେ ନାହିଁ । ତା' ଲୁଗାପଟା ବିଭୂତି କାଢ଼ି ପିଙ୍ଗିଦେଲେ । ତାକୁ ଆଉ ଉଠେଇ ରଖିବ କିଏ ? ତାର ଆଉ ଏଠି କିଏ ଅଛି ? ମୋ ଛଡ଼ା ତା'ର ଆଉ କିଏ ଅଛି ସତେ ! ଭାବିଲି, ଯଉଁଟା ଉଚିତ, ଯଉଁଟା ଠିକ୍ ବୋଲି ମୋ ମନ ଡ଼ାକୁଛି– ସେଟା ମୁଁ ନ କରିବି କିଆଁ । ବିଭୂତିଙ୍କ ଭାବିବା ନ ଭାବିବାକୁ ଏତେ ଡରି ମୁଁ ଚଳିପାରିବି ନା ? ଚଳିବି କାହିଁକି ?

ଭିକାରିର ଲୁଗାତକ ତୋଳିଆଣି ମୁଁ କୁଞ୍ଚେଇ ରଖିଲି । ମସିଆ ଲୁଗାତକ ଧୋବାଘରକୁ ଦେଇଦେଲି– ସମସ୍ତଙ୍କ ଆଗରେ ।

X X X X

ମୁଁ ଲକ୍ଷ୍ମଣ ଭଳି ଦିଅରକୁ ଭଲପାଏଁ ନାହିଁ । ଆଉ ଭଲପାଏଁ ଗୋଟାଏ ମାଗିଖିଆ ବାରବୁଲା ଟୋକାଟାକୁ ।

ମୁଁ ଝିଟ– ମୁଁ ଅଲାଜୁକୀ ।

ମୁଁ ଅଲକ୍ଷଣୀ– ମୁଁ କଳଙ୍କିନୀ– ବରଷ ଚାରିଟା ବି ସ୍ୱାମୀ ଭୋଗ କରିପାରିଲିନାହିଁ ।

ମୋରି ପାଇଁ ଦାସଘର ଭାସିଯିବ ।

ଟିଟିକାର– ଟୀକାଟିପ୍‌ପଣୀ ମୋ କାନକୁ ସବୁ ଆସିଲା ।

ଗାଧୁଆଘାଟର ଝାମା ଇଟା ଦିହରେ କେତେ ଲୋକଙ୍କର ଫଟା ଗୋଡ଼ର ଚମ ଛାଡ଼ିଗଲା ମୋରି ଚର୍ଚ୍ଚା କରି ।

କେତେ ଘରେ ମାନଭଞ୍ଜନ ହେଲା ମୋରି ଦାୟିକା ଦେଇ । କେତେ ନିଶି କେତେ ଲୋକଙ୍କର ଉଜାଗର କଟିଲା ମୋରି କଥା କହି ।

ସେସବୁର ହିସାବ କେହି ଦେଖିନାହିଁ— ମୁଁ ଦେଖିଲି । ଏସବୁ ନିନ୍ଦା ଶୁଣିବାକୁ ମୋତେ ଡରମାଡ଼ିଲେ ବି ଭଲଲାଗୁଛି । ଏଇ କଥାକଥାକରେ ଯେମିତି କି କୁହୁକ ଅଛି କେଜାଣି— ଭିକାରିକି ଯେମିତି ମୁଁ ଆସ୍ତେ ଆସ୍ତେ ବେଶି ନିଘନ ଆପଣାର କରିପକାଉଛି ।

ତଥାପି ଲାଜରେ ମୁଁ ମୁଣ୍ଡ ଟେକିପାରିଲିନାହିଁ । ମନେ ମନେ ଭାବିଲି, ମୁଁ ଯଦି ଠିକ୍ ଅଛି, ମୋତେ ଯିଏ ଯାହା କହିବାର କହୁ ।

କିନ୍ତୁ ମୁଁ କ'ଣ ଠିକ୍ ଅଛି ? ଏ ଉତ୍ତର କିଏ ଦେବ ? ମୁଁ, ନା ଆଉ ସବୁ କଥାରେ ମୁଁ ଭୁଲ୍ ଠିକ୍ ବିଚାର କରିପାରିବି; କିନ୍ତୁ ଏ କଥାରେ ନୁହେଁ । ଏଠି ମୁଁ ଭୁଲ୍ କଲେ କରିଛି— ଠିକ୍ କଲେ କରିଛି— ଯାହା ମୋତେ ଭଲଲାଗିଲା— ଯାହା ମୋପାଇଁ ଭଲ— ଯାହା ମୋ ଆଖିରେ ନ୍ୟାୟ ମୁଁ ତା କରିଛି ।

ଭଲପାଇବାଟା କେଉଁ ପାପ ନୁହେଁ । ମଣିଷର ଦେହ ଅଛି, ମନ ଅଛି, ପ୍ରାଣ ଅଛି । ମଣିଷ ତାକୁ ଚାହିଁ— ତାରି ଖାତିରରେ ଯାହା କରିଯିବ ସେଟା ଅନ୍ୟାୟ ହେବ, ଆଉ ଯେଉଁଟା ମିଛ— ଯେଉଁଟା ଅସମ୍ଭବ ତା'ରି ଧାରଣା କରି ଖାଲି ଧର୍ମ, ନ୍ୟାୟ ବୋଲି ଚିତ୍କାର କରୁଥିବ— ସେଇଟା ନାଁ ନ୍ୟାୟ ?

ମୁଁ ବିଭୂତିକୁ ଭଲପାଏନାହିଁ । ମୁଁ ଭିକାରିକି ଭଲପାଏଁ । ଏଇଟା ସତ— ଏଇଟା ମୋରିପାଇଁ ଧର୍ମ— ଏଇଟା ସେଇଥିଯୋଗୁଁ ନ୍ୟାୟ ।

ତଥାପି ଏଇ ଅବୁଝା ଲୋକେ, ଯେ କି ସବୁଦିନେ ନିଜକୁ ଠକାଇ— ସଂସାର ଆଖିରେ ଧୂଳିଦେଇ ପରଦା ପଛପଟେ ମନର ଯାବତ ବୀଭତ୍ସତାକୁ ଧର୍ମ ବୋଲି ଆଖ୍ୟା ଦିଅନ୍ତି, ମୋ ମନର କେବଳ ଗୋଟାଏ ସାଧକୁ— ହଁ କେବଳ ସାଧ— ଜଣକୁ ଖାଲି ଭଲପାଇବା— ନିଃସଙ୍ଗ ଜୀବନରେ ସଙ୍ଗୀ କରିବା— ଆପଣାର କରିବା ସାଧକୁ ଏମିତି ନିଷ୍ଠୁରଭାବରେ ପରିହାସ କରିବେ କାହିଁକି ?

ମୋତେ ଅସହ୍ୟ ବୋଧହେଲା— କାନ୍ଦମାଡ଼ିଲା । ମୁଁ ବିଛଣାରେ ପଡ଼ି କେବଳ ଛଟପଟ ହେଉଥିଲି ।

କିଏ ଆସିଲା ଜାନ ପାରିଲି । ପାଦ ଶବ୍ଦରୁ ଜାଣିଲି ଭିକାରି ।

ଦିହ ଭଲନାହିଁ କି ?— ଭିକାରି ପଚାରିଲା ।

କାହିଁ— ନାହିଁ ତ । —ମୁଁ ଉତ୍ତରଦେଲି ।

ଅବେଳଟାରେ ଶୋଇଛ ! —କହି ସେ ମୋ ମୁଣ୍ଡରେ ହାତଦେଲା— ଗରମ ଲାଗୁଛି ।

ତା' ଥଣ୍ଡାହାତଟା ମୋ କପାଳରେ ବାଜି ମୋର କେତେ କ'ଣ ଦୁଃଖ— ସନ୍ତାପ ଯେମିତି ହରିଯାଉଥିଲା । ମୋତେ ଭାରି ଭଲଲାଗୁଥିଲା । ଡର ହେଉଥିଲା— କାଳେ କାଢ଼ି ନେଇଯିବ ।

ମୁଁ କହିଲି— ବସ ।

ସେ ବସିଲା । କହିଲା— ଔଷଧ ଆଣିବି ?

ମୁଁ ମନାକଲି । କିଛି ନାହିଁ— ଖାଲି ମିଛଟାରେ କି ଓଷଧ ଖାଆନ୍ତି ।

ସେ କେତେବେଳଯାଏଁ ଚୁପ୍‌ହୋଇ ବସିଲା ମୋ ପାଖରେ। ତା ପରେ ହଠାତ୍ କହିଲା– ଅପା, ମୁଁ ଘରକୁ ଯାଉଛି ଏଥର ।

ମାନେ ? ଆଶ୍ଚର୍ଯ୍ୟହୋଇ ଚାହିଁଲି ତାକୁ ।

ନାଇଁ– ଆଉ ବସି ବସି ଏଠି ଭଲଲାଗୁନାହିଁ ।

କଟକ ?

ମଝିରେ ମଝିରେ ଆସିବି ।

ମୁଁ ତା ମୁହଁକୁ ଚାହିଁଲି । ସେ ବଡ଼ ଗମ୍ଭୀର । ବିରକ୍ତ ନୁହେଁ ।

କାହିଁକି ଯିବ ଆଗ କହିଲ !

ଯିବି– ନଯାଇ କ'ଣ କରିବି ? ଏଠି କ'ଣ ସବୁଦିନେ ରହିବାଟା ଠିକ୍ ହବ ?

ତୁମକୁ କିଏ କ'ଣ କହିଲା ଭିକାରି !

ନାଇଁ– କେହି କିଛି କହିନାହିଁ । ତେବେ ସବୁଦିନେ ପର ଉପରେ ପଡ଼ି ଖାଇବାଟା ପୁରୁଷ ପକ୍ଷରେ ବଡ଼ ଅସୁନ୍ଦର ।

ପର ? ମୁଁ ମନେ ମନେ ଭାବିଲି । –ପର ? ମୁଁ ଯାହାକୁ ଆପଣାରୁ ବଳି ଆପଣାର କରିବାକୁ ଏତେଦିନହେଲା ସାଧନା କରିଆସିଲି ନିଜର ମାନମହତ ସବୁକୁ ଖଣ୍ଡାଧାର ଉପରେ ରଖି, ସେ ମୋତେ ଯେବେ ପର ବୋଲି ଭାବିଲା–

ପର ? –ମୁଁ ତାକୁ ପଚାରିଲି ।

ନା, ନା– ଅପା, ମୁଁ ତମକଥା ମୋଟେ କହୁନାହିଁ– ରାଣ ଅଛି– ମୁଁ ତମର ଦୋଷ ଦେଉନାହିଁ– ତମେ ମୋତେ ଭୁଲ୍ ବୁଝନାହିଁ । ସେ ବଡ଼ ବ୍ୟସ୍ତ ହେଲା ।

ନାଇଁ, ମୁଁ ଭୁଲ୍ ବୁଝୁନାହିଁ । ତେବେ ତମେ ଯିବ କାହିଁକି ?

ମୁଁ– ମୁଁ ଅନେକଦିନୁ ଯାଆନ୍ତିଣି ଅପା, କେବଳ ତମରିପାଇଁ ରହିଛି–ତମେ ନ ଥିଲେ ମୁଁ ଏଠି ରହିଥାନ୍ତି କାହିଁକି ? ମୋତେ ଯିଏ ଆଣିଥିଲା– ମୋତେ ଯେ ଦୟା କରିଥିଲା, ମୋ ମନ ଯିଏ ବୁଝୁଥିଲା– ମୋ ଭାଗ୍ୟ ଖରାପ– ମୋ କପାଳ ପୋଡ଼ା– ସେ ଚାଲିଗଲେ । ମୁଁ ଆଉ କାହିଁକି ରହନ୍ତି ଏଠି– ରଖନ୍ତା କିଏ ଏଠି– ତମେ ନଥିଲେ !

ତେବେ ଯିବ କାହିଁକି– ମୁଁ ତ ମରିଯାଇନାହିଁ ?

ନାଇଁ, ମତେ ଯିବାକୁ ହବ ।– ତା ମୁହଁରେ ଯନ୍ତ୍ରଣାର ଦାଗ ।

କାହିଁକି ?– ମୁଁ ପଚାରିଲି ।

ତୁମରିପାଇଁ ।

ମୋପାଇଁ ? ମୁଁ ଆଶ୍ଚର୍ଯ୍ୟ ହେଲି ।

ହଁ– ତମରିପାଇଁ ଅପା ! ତମରିପାଇଁ ଥିଲି– ତମରିପାଇଁ ଯାଉଛି– ଆଉ ସହିପାରିବିନାହିଁ । ମୋପାଇଁ ମୁଁ ଡରୁନାହିଁ– ମୋତେ ମାରିଲେ– ଅପମାନ କଲେ– ନିନ୍ଦା କଲେ– ମୋ ଜିନିଷ ଫୋପାଡ଼ିଦେଲେ ବୋଲି ମୋ ମନରେ ଦୁଃଖ ହେବନାହିଁ– ତମପାଇଁ ମୁଁ ସେସବୁକୁ ତୁଚ୍ଛ କରିଦେଇପାରେ– କିନ୍ତୁ ତମର ଦୁଃଖ, ତମର ଅପମାନ,

ତମର ନିନ୍ଦା ମୁଁ ସହିପାରିବିନାହିଁ । ମୋଲାଗି କାହିଁକି ତମେ ଏତେ କଥା ଶୁଣିବ ? ମୋ ଲାଗି କାହିଁକି ତମେ ଏ ଅକଥା ସହିବ ? ମୋଲାଗି କାହିଁକି ତମର ନିଜଲୋକ ପରହେବେ, ଭାଇ ଭଗାରି ହେବେ– ତମକୁ ଇତର ମନେକରିବେ । ନା ଅପା– ମୁଁ ଯିବି– ମୋତେ ମନାକରନାହିଁ ।

ଆଉ ମୁଁ ?

ମୋର ଏ ପ୍ରଶ୍ନରେ ସେ ଭେଳକା ହୋଇଗଲା । ତା ଜିଭ ଅଗରେ ଅବୁଝା କେତେଗୁଡ଼ାଏ କଥା ଆସି ମିଳେଇଯାଉଥିଲା ଯେମିତି । ତାର ରଙ୍ଗ ରଙ୍ଗ ଦୁଇ ଓଠର ଫାଙ୍କରେ ଶଙ୍ଖମଲମଲ ଧଳା ଦାନ୍ତଗୁଡ଼ିକୁ ସଜାଇଦେଲା ପରି ଦିଶୁଥାଏ । ସେ ଏଡ଼େ ସୁନ୍ଦର ! ସତେ କେଡ଼େ ସୁନ୍ଦର ସେ ! ସେ ହଠାତ୍ ଯେମିତି ଆହୁରି ସୁନ୍ଦର ହେଇ ଉଠିଲା । କି ଗୋଟାଏ ଅଜଣା ଗୌରବରେ ସେ ତେଜିଉଠୁଥିଲା– ଗୋଟାଏ ଆକାଙ୍କ୍ଷିତ ସଫଳତାରେ ସେ ସାର୍ଥକ ହେଇଯାଉଥିଲା– ବିସ୍ମୟ ଆଉ ଆନନ୍ଦରେ ତାର ଆଖିଯୋଡ଼ିକ ଫୁଟିଲା କଇଁଭଳି ଚହଟିଉଠୁଥିଲା ।

ସେମାନେ କହୁଛନ୍ତି– ସେ ରହିଗଲା ।

କ'ଣ ?– ମୁଁ ପଚାରିଲି ।

କେତେ କଥା–

କହନ୍ତୁ ।

ଅପବାଦ ଦେଉଛନ୍ତି–

ଦିଅନ୍ତୁ ।

ଷଡ଼ଯନ୍ତ୍ର କରୁଛନ୍ତି–

କରନ୍ତୁ ।

ମୋର ମନେହେଉଥାଏ ଅପବାଦ, ନିନ୍ଦା, ଷଡ଼ଯନ୍ତ୍ର ଗୋଟି ଗୋଟି ହୋଇ ଆସି ଯେମିତି ପଥର ଲଦିଲାପରି ମୋ ଉପରେ କିଏ ଲଦିଦେଇଯାଉଛି । ଆଉ ମୁଁ ତାକୁ ଦମ୍ଭଧରି ମଥା ଉପରେ ରଖି ଚାଲିଛି– କେଉଁଠିକି ଜାଣେନାହିଁ– ଆଗରେ ଭିକାରି । ସେହି ସାହସ, ସେଇ ଭରସା ।

ବାବୁନି ଆସି ଡାକିଲା– ବୋଉ !

ମୁଁ ଶୁଣିଲିନାହିଁ । ଭିକାରି ମୋ ପାଖରେ । ମୋର ମନେହେଲା– ଏ ପୃଥିବୀରେ ଆମେ ଦୁଇଟି–ଭିକାରି ଆଉ ମୁଁ – ଏଠି ଆଉ କେହି ନାହିଁ– ଆଉ କେହି ରହିପାରେ ନା– ସେ ମୋପାଇଁ ନିନ୍ଦା ସହିଛି– ଭର୍ତ୍ସନା ସହିଛି– ମୁଁ ତା ପାଇଁ ସବୁ କଳଙ୍କ, ସବୁ ଅପବାଦ ମୁଣ୍ଡେଇନେବାକୁ ପ୍ରସ୍ତୁତ ଅଛି– ସେ ମୋର, ମୁଁ ତା'ର ।

ବିଭୂତି– ସେ ଆହୁରି ଦୂର– ସେ ଏ ତ୍ୟାଗର ମାହାତ୍ମ୍ୟ ବୁଝିପାରିବନାହିଁ । ବାବୁନି– ଟିକି ବାବୁନି ଢେର୍ ଦୂରରେ । ସେ ଏ ତ୍ୟାଗର ଅର୍ଥ ବୁଝୁନାହିଁ । ଆଉ ଏ ଫଟୋ ? ମୁଁ ଆଖି ବୁଜିଦେଲି । ସେଠି ଆଉ ସେ ଫଟୋ ନାହିଁ– ସେ ଅନ୍ଧାର ଭିତରେ ବି ସେଇ

ଭିକାରି । ସେମିତି ନୀରବ— ସେମିତି ସୁନ୍ଦର, ସେଇମିତି ଅତି ଆପଣାର, ନିଜର ନିକଟର ପରି ଭାବଭଙ୍ଗୀ ।

ମୁଁ ମୁହଁଫେରାଇ ଶୋଇଲି— ଭିକାରିର ସେପାଖକୁ । କାନଟା ବନ୍ଦହୋଇ ଘୁ ଘୁ ଶବ୍ଦ ହେଲା । ଶୁଣିଲି— ତା ଭିତରେ ବି କିଏ କହୁଛି— ଭିକାରି ଭିକାରି ।

ମୁହଁମାଡ଼ି ଶୋଇଲି । ତକିଆ ଉପରେ ବାଜି ବୁକୁର ଦୁକୁଦୁକିଟା ସତେ ଯେମିତି କିଏ ଗୋଟାଏ ବାହାରୁ ଭିକାରି ଭିକାରି ଡାକିବା ବେଳକୁ ସେ ତାଳ ଦେଉଛି ।

ଭିକାରି ଆହୁରି ମୋ ପାଖକୁ ଲାଗିଆସିଲା । ଦୁର୍ବଳ ମନଟାକୁ ନେଇ ଭିକାରିର ଦିହଘଷା ହେବାକୁ ମୋତେ କାହିଁକି ଭଲଲାଗିଲା ।

ଭିକାରି ମୋ ଡାହାଣ ବାହା ଉପରେ ହାତରଖି ଡାକିଲା— ଅପା !

ମୁଁ ତା ଆଡ଼କୁ ଅନାଇଲି ।

ସେମାନେ ଯଦି ମୋତେ କାଢ଼ିଦିଅନ୍ତି !

ମୁଁ ଡାକିଆଣି ଘରେ ରଖିବି, ନହେଲେ—

ନାଇଁ— ନାଇଁ ଅପା, ମୁଁ ବାଜେ ଲୋକ— ବୁଲା ଲୋକ— ଯାତ୍ରାଟୋକା— ବାହାର ମଣିଷ— ମୁଁ ଗରିବ— ଦୁଃଖୀ— ମୋପାଇଁ ଏଡ଼େ ବଡ଼ ଘରଟାକୁ ଛାରଖାର କରିଦେବ ? ଅଶାନ୍ତିର ନିଆଁଲଗାଇଦେବ ? ନା— ନା, ମୁଁ ତା' କରିବାକୁ ଦେବିନାହିଁ । ସେକଥା ହେବନାହିଁ— ନା— ନା, ମୁଁ ଯାଉଛି ଅପା !

X X X X

ମୁଁ ସେଇବାଟେ ଯାଉଥିଲି, ବିଭୂତି ତା ଘରେ ଥିଲା । ସେ ଦୁହେଁ ବଡ଼ ଆଉ ଆସ୍ତେ ଫୁସ୍‌ଫୁସ୍ ହୋଇ କ'ଣ କଥାବାର୍ତ୍ତା ହେଉଥିଲେ । ମୁଁ ଟିକିଏ ଛପିଯାଇ କାନପାରିଲି— କାଲେ ମୋରି କଥା ହୋଇଥିବ ।

ମୁଁ ଏ ଘରେ କେହି ନୁହେଁ— ମୋ ଗେରସ୍ତର କ'ଣ ଭାଗ ନାହିଁ ସମ୍ପତ୍ତିରେ ? କାହିଁକି ସେସବୁ ଘରେ କଞ୍ଚିଦେଇ ରଖିବେ ? ଘରେ ତାଙ୍କର ଯେତିକି ହିଁସା, ମୋର ବି ସେତିକି । ମୋର ଟିକିଏ କିଛି ଦରକାର ହେଲେ ତାଙ୍କୁଇଁ ଚାହିଁବସିଥିବି ? କି— କାହିଁକି ? ମୁଁ କ'ଣ ପୋଇଲୀ ? ମୁଁ କ'ଣ ରାଣ୍ଡଖଣ୍ଡି ହେଇଛି ? ନା—ନା, ମୁଁ ଏଠି ରହିପାରିବିନାହିଁ । ଗୋଟାଏ ଯାତ୍ରାଟୋକା ବୋଲି ବିଚାର ନାହିଁ— ସେ ଆଉ ତମେ ସମାନ ? ସବୁ ଭଲ ଜିନିଷ, ଭଲ ଦରବ ଯାହା ଟିକିଏ ଘରେ ହବ— ଦୁଧ, ଦହି, ଘିଅ ପରିଯନ୍ତେ ସବୁ ତା' ପାଇଁ ଆଗ ଅଲଗା ଜାଗାରେ ସାଇତା ରହିବ— ଆଉ ତମେ ଖାଇବ ତା' ବଳକା ଅଇଁଷା ? ନାଇଁ— ମୁଁ ଏସବୁ ସହିପାରିବିନାହିଁ ।

ବିଭୂତି କେବଳ ହୁଁଟିଏ ମାରି ଚୁପ୍ ରହିଲେ ।

ନାଇଁ ନାଇଁ, ସେ ଗୁଁ-ପୁଁ କଥା ହେବନାହିଁ । ତମେ ଯାର ଗୋଟେ ଉପାୟ କର— ନୋହିଲେ ମୋତେ ନେଇ ମୋ ବାପଘରେ ଛାଡ଼ିଦେଇଆସ । ସେ ଯାତ୍ରାଟୋକା ଯିବ, ମୁଁ ତେବେ ଯାଇଁ ଆସିବି ।

ତମେ ଏମିତି କାହିଁକି ହେଉଛ ! ଟିକିଏ ସହିନିଅ । ଏତେ ଅଥୟହେଲେ ଚଳିବ ନା !

ନା— ନା, ମୁଁ ଏସବୁ ସହିପାରିବିନାହିଁ । କାହିଁକି, ବାପାଙ୍କୁ କହି ତମେ ଭିନେ ହେଇ ଯାଉନା— ସେ ତା'ର ସେଇ ଯାତ୍ରାଟୋକାକୁ ନେଇ ରହୁ ।

''ଛି—ଛି, ତମେ ଏମିତି କହିବନାହିଁ । ଆମ ଘରର ବଦ୍‌ନାମ ହବ । କିଏ କେଉଁଠି ଶୁଣିବ । ତା ଛଡ଼ା ନୂଆବୋଉ ଶୁଣିଲେ ତାଙ୍କର ଦୁଃଖ ହବ— ସେ ବିଧବା ଲୋକ । ଭାବୁଥିବେ— ମୁଁ ବିଧବା ବୋଲି—''

ଆହା-ହା— ଯଉଁ ବିଧବା— କହନାହିଁ ସେଗୁଡ଼ା ଆଉ ମୋ ଆଗରେ ।

ମୁଁ ବୁଝୁଛି— ମୁଁ ଜାଣେ । ତଥାପି ଘରର ମାନ, କୁଳର ମର୍ଯ୍ୟାଦା...

କି ଘର, କି କୁଳ ? ତା' ଘର ତା'ର— ଆମ ଘର ଆମର, ତା କୁଳରେ କଳା ଲାଗୁ, ମୋର କ'ଣ ହେଇଯିବ ?

ମୁଁ ଚମକିପଡ଼ିଲି । ଧୀରେ ଧୀରେ ସେଠୁ ଅପସରିଗଲି । ମଲାମଣିଷ ଗୋଡ଼ ପରି ମୋ ଗୋଡ଼ ତଳ 'ଅଣ୍ଟା ଆଉ କାଠ...

ଭଲ ମଣିଷକୁ ଚୋର ଚୋର କହିଲେ ସେ ଚୋରି ଶିଖେ । ମଣିଷ ଭିତରେ ଯଉଁ ବଡ଼ିମା—ଯଉଁ ଗରବ ମଣିଷ ମଣିଷ ବୋଲି, ମଣିଷ ମଣିଷ ହୋଇଅଛି ବୋଲି ମଣିଷକୁ ସବୁବେଳେ ଚେତେଇ ଦେଉଥାଏ, ସେଇଟା ଆପେ ଆପେ ହେଉ, ନିଜ ଇଚ୍ଛାରେ ହେଉ ବା ଆଉ କାହାରି ବଳାତ୍କାରରେ ହେଉ, ଥରେ ଭାଙ୍ଗିଗଲେ, ମଣିଷ ଆପଣାଛାଏଁ ଅମଣିଷ ହେଇଯାଏ ।

ଭଲମଣିଷ ଚୋରି କରେ । ଭଲହେବାପାଇଁ ଯେତିକି ଶକ୍ତି, ସାଧନା, ସାହସ, ଧୈର୍ଯ୍ୟ ସବୁ ଓଲଟିପଡ଼େ । ଖରାପହେବାପାଇଁ ସେ ସାହସ ବାନ୍ଧେ ।

ଚୋରକୁ ଚୋର ବୋଲି କହିଲେ ତା'ର କିଛି ଯାଏ ଆସେ ନାହିଁ— ସେ ଚୋରି ଛାଡ଼େ ନାହିଁକି ସେଥିପାଇଁ ଅଧିକ ଚୋରିକରେନାହିଁ । କାରଣ ସେ ଦୁର୍ବଳ ମନକୁ ଆଉ ସବଳ କରିପାରେନାହିଁ ସହଜରେ ।

କିନ୍ତୁ ସାଧୁକୁ ଚୋର ଚୋର ବୋଲି କହିଲେ— ତା'ର ଅଭିମାନ ଆସେ, ସେ ଚୋରିକରି ଦୁନିଆକୁ ଦେଖେଇଦିଏ ଯେ ଚୋରିଟା ଗୋଟେ ଏଡ଼େ ବଡ଼କଥା ନୁହେଁ । ଚୋରିଟାରେ ଥଟା କରିବାର, ନିନ୍ଦା କରିବାର କିଛି ନାହିଁ । କାରଣ ତା'ଭଳି ଲୋକ ବି ଚୋରିକରିପାରେ । ଯାହାର ସାହସ ଅଛି, ସେ ଚୋରିକରିବ । ଇତର ଲୋକେ ଯଦି ହସିବେ ତ ହସନ୍ତୁ । ସେ ତାକୁ ଖାତିରକରେନାହିଁ । ସେ ଦେଖେଇଦିଏ— ଏତେ ଲୋକ କହିବା ସତ୍ତ୍ୱେ, ଘୃଣା କରିବା ସତ୍ତ୍ୱେ, ହସିବା ସତ୍ତ୍ୱେ ସେ ସାହସ ବାନ୍ଧି, ଧୈର୍ଯ୍ୟଧରି ତାଙ୍କରି ଆଖିଆଗରେ ସେମାନେ ଯାହା କରିପାରୁନାହାନ୍ତି— ଏଡ଼େ ଜଘନ୍ୟ, ଏଡ଼େ ଘୃଣ୍ୟ କାମ ସେ କରିପାରୁଛି ।

ମୁଁ ଠିକ୍ କଲି, ଯିଏ ଯାହା କହୁ, ମୁଁ ଭିକାରିକି ଡାକି ଭଲ ଭଲ ଜିନିଷ ଖାଇବାକୁ ଦିଏଁ । ତା' ଆଗରେ ଭିକାରିକି ପଇସା ଦିଏଁ, ଭଲ ଲୁଗା, ଭଲ ଜୋତା, ଭଲ ଜାମା,

ବିଭୂତିର ଲୁଗା, ଜାମା, ଜୋତା ଭଳିଆ କିଣିଆଣିବାକୁ । ମୁଁ ଶୋଇଥାଏଁ । ଭିକାରି ଆସି ମୋ ପାଖରେ ଲାଗିକରି ବସେ । କେତେବେଳେ ଭିକାରି ଶୋଇଥାଏଁ, ମୁଁ ତା ପାଖରେ ଯାଇଁ ଘଷିହୋଇ ବସେଁ । ସେତିକିବେଳେ ମିଛୁଟାରେ ଗୋଟାଏ କାମର ବାହାନାକରି ମୁଁ ସାନବୋହୂକୁ ଡାକିପଠାଏଁ– ସାନବୋହୂ ଯେମିତି ଦେଖୁ ।

ମୋର ସେଥିରେ ମନର ଗୋଟାଏ ବଡ଼ ଅଭିମାନ ଯେମିତି ମେଣ୍ଟିଯାଉଥିଲା ।

X X X X

ଭିକାରି ଗଲା ଘରକୁ । ଦିନାକେତେ ବୁଲିଆସିବ । କିନ୍ତୁ ସେ ଚାଲିଗଲା ବେଳୁଁ ମୋ ଦେହର ସବୁ ଜିନିଷ ଯେମିତି ଅଲଗା ଲାଗୁଛି । ଯେତେ ଅଯୋଡ଼ାକୁ ଯୋଡ଼ିବସିଲେ ସେ ଯୋଡ଼ିହେଉନାହିଁ । ଭିକାରିକି ଦୂରରେ ରଖି ମୁଁ ଯେମିତି ମୋ'ରି ଜୀବନଟାକୁ ସମ୍ଭାଳି ନେଇପାରୁନାହିଁ । ଆଉ ତା'ପରେ ତ ନିନ୍ଦାଅପବାଦ ଲାଗିରହିଛି ।

ମୁଁ ପଡ଼ିଗଲି ବିଛଣାରେ । ଜର–ଝାଡ଼ା । ଭିକାରିକି ଦେଖିବାପାଇଁ ମନଟା ଆଉଟି ହେଲା । ଦାଣ୍ଡରେ କେହି କଥା କହିଲେ, ମୋତେ ଲାଗେ ଭିକାରି ଅଇଲା କି ? କେହି ଜଣେ ମୋ' ଘରଭିତରକୁ ପଶିଆସିଲେ ମୋର ମନେହୁଏ ଭିକାରି ଦୁମ୍ଦୁମ୍ ହୋଇ ଆସୁଛି କି ? କିନ୍ତୁ ଭିକାରିର ସ୍ୱର, ଭିକାରିର ଚାଲି ସହିତ ମୁଁ ଏତେ ବେଶି ଅଭ୍ୟସ୍ତ ଯେ ମୋତେ ଆଉ କାହାରି କଥା, ଆଉ କାହାରି ଚାଲି, ଭିକାରି କଥା, ଚାଲି ବୋଲି କହି ଭୁଲାଇ ଦେଇ ପାରିବନାହିଁ ।

ଭିକାରି ଆସିଲା । ତା' ଜୋତା ଶବ୍ଦରୁ ମୁଁ ଜାଣିଲି । ମୁଁ ଅଭିମାନରେ ମୁହଁବୁଲାଇ ଶୋଇଲି । ଭିକାରି ଆସି ମୋ ପାଖରେ ଠିଆହେଲା । ତା' ଛାଇଟା ଯେମିତି ମୋତେ ମାଡ଼ିବସିଥାଏ ।

ଅପା !– ସେ ଡାକିଲା ।

ମୁଁ ଶୁଣିଲିନାହିଁ । ତା' ପରେ–

ତା ପରେ ମୋ ଉପରେ ସେ ହାତ ପକାଇଲା । ମୋ ପାଖରେ ବସି ଆଉଁସି ଦେଲା । ମୁଁ ସବୁ ଭୁଲିଗଲି । ମୋର ସବୁ ରାଗ ମିଳେଇଗଲା କୁଆଡ଼େ । ମୋ ଦେହ ଶୀତେଇଉଠିଲା । ମନେହେଲା, ମୋ ରୋଗ କମିଯାଉଛି ଯେମିତି ।

ଭିକାରି ମୋତେ ଔଷଧ ଆଣି ଦେଲା ।

ଭିକାରି ମୋର ପଥିର ବନ୍ଦୋବସ୍ତ କଲା ।

ଭିକାରି ମୋ ରୋଗର ଅଧେ ଯେମିତି ହରଣ କରିନେଇଗଲା ।

ମୁଁ କହିଲି, ଭିକାରି ! ରାତିରେ ତମେ ଏଇଠି ଶୁଅ । ତମେ ନରହିଲେ ମୋତେ ରାତିରେ କେହି ଔଷଧ ଦେବେନାହିଁ ମୁଁ ଜାଣେ ।

ଭିକାରି ମୋତେ ଚାହିଁଲା, ମୁଁ ବୁଝିପାରିଲି ସେ ଡରୁଛି । ଆଉ ଜିଦ୍ କଲିନାହିଁ । ଭିକାରି କହିଲା, ସେ ରାତିରେ ଔଷଧ ଦେବାପାଇଁ ଆସିବ ।

ରାତିରେ ସେ ଆସି ଔଷଧ ଦେଇ ଚାଲିଯାଉଥିଲା । ମୁଁ ଡାକିଲି– କହିଲି, ମୁଣ୍ଡ ବଡ଼ ବିନ୍ଧୁଛି ।

ଟିକିଏ ଚିପିଦେବି ?— ସେ ପଚାରିଲା ।

ହଉ, ଦିଅ ।— ମୁଁ କହିଲି ।

ମୋ ଦେହଟା ଥରିଉଠିଲା । ମୋତେ ସତରେ ଯେମିତି ଜର ଆସୁଛି । ଭାରି ଜୋର୍‌ରେ କମ୍ପ ଆସୁଛି ।

ଭିକାରି ମୋ ଦେହରେ ହାତ ମାରିଲା, ଜର ଆସୁଛି ନା କ'ଣ ?

ବୋଧହୁଏ— ମୁଁ କହିଲି, ''କମ୍ପ ଉଠଉଛି— ଟିକିଏ ମୋ ଉପରେ ଲଦିହେଇପଡ଼ିଲ ।''

ସେ ବଡ଼ ସଂକୁଚିତ ହେଇ ଲଦିହେଲା । ମୋର ମନେହେଉଥାଏ, ସେ କିମିତି ଆହୁରି ବେଶିଭାବରେ ମୋ ଦିହରେ ମିଶିଯାନ୍ତା ।

ଜର ନୁହେଁ, ଆଉ ଗୋଟାଏ କି ଅସୁସ୍ଥ ଉତ୍ତାପରେ ଦିହଟା ଗରମ ହୋଇ ମୋତେ ନିଦହେଲାନାହିଁ । ଭୋର୍ ଭୋର୍ ଟିକିଏ ଛାଇନିଦ ମାଡ଼ିଆସିଲା । ମୁଁ ସପନ ଦେଖିଲି । ସେ ଠିଆହେଇଛନ୍ତି । ବାଳଗୁଡ଼ାକ ନୁଖୁରା । ଉପରକୁ ଠିଆହୋଇଛି । ଆଖି ଦି'ଟା ଏଡ଼େ ଏଡ଼େ । ଆଉ ଗୋଟାଏ ଅବୁଝା ଭାଷାରେ ସେ କ'ଣ ଗୁଡ଼ାଏ ବକିଯାଉଛନ୍ତି । ମୁହଁଟା ବୀଭତ୍ସ । ଡରରେ ମୁଁ ହାଉଳିଖାଇ ଉଠିଲି । ଭିକାରି ଆସୁଥିଲା ମୋ ପାଖକୁ । ସେ ଦଉଡ଼ିଆସିଲା ପାଖକୁ । ମୁଁ ତାକୁ ଭୟରେ ଧରିପକାଇଲି ।

ଭିକାରି ପଚାରିଲା କ'ଣ ହେଲା ?

ମୋର ସାହସ ପଶିଲା । ମୁଁ ଭିକାରିକି ଚାହିଁ ହସିଲି । କହିଲି— କିଛିନାହିଁ ।

X X X X

ମୁଁ ଭିକାରି ମୁହଁକୁ ଚାହିଁଲି । ଚାହିଁ, ଭାବିଲି ଗୋଟାଏ ଜିନିଷ ମୋର ଥିଲା— ସେ ହଜିଯାଇଛି । ସେ ଆଉ ମିଳିବନାହିଁ । ତାକୁଇ ଖାଲି ମନରେ ଡରି ଡରି ମଣିଷ— ଜୀଅନ୍ତା ମଣିଷ, ଯାହା ସତ, ଯାହା ସୁନ୍ଦର— ଆଖି ଆଗରେ, ହାତପାଆନ୍ତାରେ ଯାହା ଥୁଆହେଇଛି, ଏଡ଼େସହଜରେ ଆଜି ଯାହାକୁ— କେତେ ଅସାଧ ସାଧନା ପରେ— ଆପଣାର କରିହେଉଚି, ତାକୁ ଅବହେଳା କରିବାଟା କ'ଣ ଧର୍ମ ? ଯାହା ନାହିଁ, ଯିଏ ହଜିଯାଇଛି ତାକୁ ମନେରଖାଯାଇପାରେ— ମନେ ମନେ ତାକୁ ଶ୍ରଦ୍ଧାକରାଯାଇପାରେ— ଭଲ ବୋଲି କୁହାଯାଇପାରେ— ଜୀଅନ୍ତା ମଣିଷ ପାଖରେ ତା'ର ସେତିକି ସିନା ଦାବି ! ତା' ବୋଲି ସେଇ ମିଛଟା ପାଇଁ, ମଣିଷ ଏଡ଼େ ବଡ଼ ଜୀବନଟାକୁ— ଜୀବନର ସତ୍ୟଟାକୁ ଦହଗଞ୍ଜ କରିବ କାହିଁକି ? ସେଇଟା କ'ଣ ନ୍ୟାୟ ?

ସେଇ ଘରେ କାନ୍ଥ ଉପରକୁ ତାଙ୍କର ଆଉ ଗୋଟେ ଫଟ ଟଙ୍ଗା ହୋଇଥିଲା । ମୁଁ ଚିତ୍‌ହୋଇ ଶୋଇଲେ ସେ ଫଟୋ ବରାବର ଦେଖାଯାଏ । ମୁଁ ସେଦିନ କେହି ନଥିବା ବେଳେ ସେ ଫଟଟାକୁ ଲେଉଟାଇଦେଲି । ଭିକାରି କିନ୍ତୁ ଫଟଟା ଓଲଟିପଡ଼ିଛି ବୋଲି ଚଟ୍‌କିନା ବାରିନେଲା । ଫଟଟା ଏମିତି ହେଲା କେମିତି ? —କହି ସେ ନିଜେ ଯାଇ ସଜାଡ଼ିଦେଇଆସିଲା । ଭିକାରି ପୁଣି ଥରେ ତାକୁ ତାଙ୍କ ସହିତ ତୁଳନା କରିବାପାଇଁ ମୋ ଆଗରେ ଆସି ହାଜର ହୋଇଗଲା ଯେମିତି ।

ମୁଁ ମନେ ମନେ କହିଲି— ଭିକାରି, ତମେ ମୋତେ ପରୀକ୍ଷା କରୁଛ ପୁଣି ? ଯାହା ଯାଇଛି, ସେ ଯାଇଛି— ଚିରଦିନପାଇଁ ଯାଇଛି । ସେ ଯେତେ ବଡ଼ ହେଉ— ଯେତେ ମହତ୍ ହେଉ, ତାରି ଧାରଣାରେ ଖାଲି ଯାହା ମୁଁ ପାଇବି, ପାଉଚି । ସେ ଲକ୍ଷେ ହେଲେ ବି ତାକୁ ତାଠୁଁ ଛୋଟ କରିପାରିବନାହିଁ । ସେ ମୋପାଇଁ ଢେର୍ ବଡ଼— ସ୍ୱର୍ଗ । ସେ ନଥିଲା ଜିନିଷ ପଛରେ ଗୋଡ଼େଇ ଗୋଡ଼େଇ ମୋ ମନ ଥକିପଡୁଛି । ସେ କଳ୍ପନାର ପିତୁଳିଟାରେ ମୋ ମନ ଲାଗୁନାହିଁ; ମୋଟେ ଧରିପାରୁନାହିଁ ତାକୁ । ଏ ପରା ଜୀଅନ୍ତା ମଣିଷର ମନ !

ମୁଁ ଭିକାରିକି ଚାହିଁ ଦେଖିଲି— ସେ ମୋ କଥାକୁ ପରତେ ଯାଉନାହିଁ ଯେମିତି !

ମୋ ମନେ ମନେ ମୁଁ ବି ଭିକାରିକି ବୁଝାଉଥିଲାପରି ଭାବିଲି— ଭିକାରି, ହଁ, ମୁଁ ମାନୁଛି, କଳ୍ପନାଟାର ସୀମାନଥାଏ, ସେଥିପାଇଁ ମଣିଷର ମନ କଳ୍ପନାକୁ ବଡ଼ କରେ । କିନ୍ତୁ କାହିଁକି ? ପାଇବାର ଆଶା ଥାଏ ବୋଲି । ହେଲେ, ସଞ୍ଜୁଆ ଉପଭୋଗ କରିବାପାଇଁ ମଣିଷର ଚଳନ୍ତି ମନ ଯେତେବେଳେ ଡାକେ, ସେତେବେଳେ ମନର ସେହି ଅଥାନିଆ ଆଶାଟା ପାଖରେ ପାଇବା ଜିନିଷକୁ ବଡ଼ନକରି, ଯାହାର ଆଶା ନାହିଁ ଏ ଜୀବନରେ— ଯା'ର ଭରସା ଚିରଦିନପାଇଁ ତୁଟିଯାଇଛି— ତାକୁ ବଡ଼କରିବ କାହିଁକି ? କି ସ୍ୱାର୍ଥରେ ?

ମୁଁ ଠିକ୍ ବୁଝିପାରିଲି, ଭିକାରି ମୋ ଆଖିରେ ଅତି ବଡ଼ । ମୁଁ ଯେମିତି ତା'ର ଗୋଟାଏ ଛାଇ । ସେ ଛାଇଟା ଆଲୁଅରେ ପଡ଼େନାହିଁ, ଅନ୍ଧାରରେ ସେ ଖୁବ୍ ସଫା ଦେଖାଯାଏ । ସେ ଛାଇଟା ବାହାରେ ପଡ଼େନାହିଁ । ସେଟା ପଡ଼େ ଯାଇ ଅତି ଭିତରେ— ଅତି ଗୋପନରେ ।

ଯେଉଁ ଜିନିଷଟା ଉପରେ ଅନ୍ୟର ଦାବି ଥାଇପାରେ, ଯେଉଁ ଜିନିଷଟା କରଛଡ଼ା ହେଇଯିବ ବୋଲି ଡର ଥାଏ, ସେଇ ଜିନିଷଟାକୁ ପାଇବାପାଇଁ ଯେତିକି ଆଗ୍ରହ, ତାକୁ ପାଇଗଲାକ୍ଷଣି ଅନ୍ୟକୁ ଲୁଚାଇ ରଖିବାରେ ତାଠୁଁ ବଳି ଆନନ୍ଦ । ଭିକାରିକୁ ମୁଁ ଯେତେ ଭଲପାଇଥିଲି, ସେ ଭଲପାଇବାଟାକୁ କାଳେ କେହି ଛଡ଼ାଇ ନେଇଯିବ ଏଇ ଡରରେ ମୁଁ ତାକୁ ଅତି ଗୋପନରେ ରଖୁଥିଲି । କାରଣ ଭିକାରିକୁ ଭଲନପାଇଲେ ମୁଁ ବଞ୍ଚିପାରିବିନାହିଁ, ଏକଥା ମୁଁ ବେଶ୍ ବୁଝିପାରୁଥିଲି ।

ତଥାପି ସେଇ ଫଟ ପାଖରେ ମୁଁ ଲୁଚେଇ ରଖିପାରେନାହଁ । ପିଲାଏ ଡରରେ ଯେମିତି ଯାହା ଯେଉଁଠି ବଦ୍‌ମାସୀ କରିଥାନ୍ତି ମାନିଯାନ୍ତି ମୁଁ ସେଇମିତି ସବୁ ମାନିଯାଏଁ । ମନକୁ ଖୋଲି ଦେଖେଇଦିଏଁ ସେ ଫଟ ଆଗରେ । ପଚାରେ—ମୁଁ କ'ଣ କିଛି ଅନ୍ୟାୟ କରିଛି ? ତମକୁ ସାଇତି ରଖିବାରେ କ'ଣ ହେଳାକରିଛି ?

ଫଟ ଜବାବ୍ ଦିଏନାହିଁ । ମୁଁ ଫେରିଆସେ । ଏଣେ ଆସି ଦେଖେ, ସେ ଫଟକୁ ମୁଁ ଯେତେ ସଫାସୁତୁରା କରି ରଖିଦେଉଛି, ତାକୁ କିଏ ଆଉ ଆସି ପୁଣି ସେତିକି ଅସନାକରି ଦେଇଯାଇଛି । ମୁଁ ଯେତିକି ଝାଡ଼ିଝୁଡ଼ିକି ଥୋଇଦେଇଯାଉଛି, ସେ ଫଟଟାରେ ପୋକ ଲାଗି ସେତିକି ଟିକି ଟିକି କରିପକାଉଛନ୍ତି । ସେ ଛବି ଆଉ ରହିବନାହିଁ— ସେ ଛିଡ଼ିଯିବ— ନଷ୍ଟ ହୋଇଯିବ । ସେଥିପାଇଁ ମୋର ଦୋଷଦେବ କିଏ ? ମୋତେ ଦାୟୀକରିବ କାହିଁକି— କେମିତି ?

ସେଥିପାଇଁ ଏଇ ସମୟକୁ ଗାଳିଦିଅ— ସମୟକୁ ଜବଦ୍ କର । ସମୟ ଯଦି ନ ଶୁଣେ, ମୁଁ କ'ଣ କରିବି ? ସେ ରାଗଟାର ଦାଉ, ସମାଜ ମୋ ଉପରେ ଶୁଝିନେବା କ'ଣ ଉଚିତ ? ମଣିଷ ଗଲା କଥାକୁ ଧରିରଖିବାକୁ ଜନମ ହେଇନାହିଁ । ଭୁଲିବାଟା ମଣିଷର ସହଜାତ ସ୍ୱଭାବ— ମଣିଷ ମନର ଲକ୍ଷଣ । ମଣିଷ ମନକୁ ବାଧ କରେ, ଜବରଦସ୍ତି କରେ, କେତେବେଳେ ସାଳୁଲାଏ—ବହଲାଏ—କିନ୍ତୁ ମନ ତା କାମ କରିଯାଏ— ସେ ମାନେନାହିଁ । ସମୟ ସାଙ୍ଗରେ ସେ ଦୌଡୁଥାଏ— ଖାଲି ଗଲାକଥାଗୁଡ଼ାକ କିମିତି ଭୁଲିଯିବ— କେମିତି ମାୟା ତାର ସେଥିରୁ ଛାଡ଼ିଯିବ— କେମିତି ସେ ମଣିଷର ଏଇ ବାଧକରି ମନେରଖାଇବାର ଅତ୍ୟାଚାରରୁ ତ୍ରାହି ପାଇବ— ନିସ୍ତାର ହେବ— ସେଥିପାଇଁ ତମେ ମନକୁ ଗାଳିଦିଅ – ସମୟକୁ ଗାଳିଦିଅ । ମତେ କାହିଁକି ଗାଳିଦେବ— ମୁଁ କି ଅପରାଧ କଲି କି ? ଆଉ ସମୟକୁ ବା ଗାଳିଦେଇ କି ଲାଭ ? ସମୟ ଉପରେ କାହାରି ହାତ ନାହିଁ । ସମୟ ଯାହାକୁ ଫିଙ୍ଗିଦେଇ ଚାଲିଯିବ, ତାକୁ କେହି ଧରି ରଖିପାରିବନାହିଁ । ତା ହେଉଥିଲେ ଦୁନିଆରେ ସବୁ ରହୁଥାନ୍ତା— କିଛି ଯାଉନଥାନ୍ତା । ଦିନ ଯାଉ ନ ଥାନ୍ତା— ରାତି ଆସୁନଥାନ୍ତା— ଖରା, ବର୍ଷା ହେଉନଥାନ୍ତା— ଘଟଣାର ପଟ ପ୍ରତି ମୁହୂର୍ତ୍ତରେ ଏମିତି ଭେଳିକିବା ଭଳିଆ ବଦଳିଯାଉନଥାନ୍ତା । ଦୁନିଆ ଚାଲିଥାନ୍ତା ନିହାତି ସେଇ ଏକାଳିଆ ନିର୍ଜୀବ ଢଙ୍ଗରେ । ଅମାପ ସମୟଟାକୁ ମଣିଷ ଭାଗ ଭାଗ କରି ଦେଖିବାଟା ଦରକାର ବୋଲି ମନେକରୁନଥାନ୍ତା । ଏହି ସମୟଟାକୁ ଧରି ନ ରଖୁଛି ବୋଲି ମୁଁ ଦୋଷୀହେବି ନା ?

ଆଉ ମନ ! ମନ ଉପରେ କାହାର ହାତ ଅଛି ? ମନ କାହାର ନାହିଁ ? ଛାତିରେ ହାତରଖି କହ— କିଏ ମନକୁ ଆପଣା ଅକ୍ତିଆରରେ ଧରି ରଖିପାରିଛି ? ମନଟା ମଣିଷର ଏତେ ଆପଣାର ଯେ ତାକୁ ଜୋର୍‌ଜବରଦସ୍ତି କରିହୁଏନାହିଁ । ମନର ଅନୁଯୋଗ, ମନର ଅଳି, ମନର ବାଧବାଧକତାକୁ ଏଡ଼ିପାରିବ କିଏ ? ମନ ଯେତେବେଳେ ଦୁଷ୍ଟପିଲାଙ୍କ ଭଳି ଅମାନିଆ ହୁଏ, ସେତେବେଳେ ତାକୁ ସମ୍ଭାଳିବା କାର କ୍ଷମତା ? ହଁ ମାନୁଛି— ମନକୁ ବାନ୍ଧିରଖିବାରେ ବାହାଦୁରି ଅଛି । କିନ୍ତୁ ଅତି ଆପଣାର ଅଳିଅଳ ଏଇ ମନକୁ ଏମିତି ଯନ୍ତ୍ରଣା ଦେଇ ନିଜକୁ କେତେ ଯନ୍ତ୍ରଣା ଭୋଗ କରିବାକୁ ହୁଏ ସେତକ ବୁଝିବାକୁ କ'ଣ କାହାର ବାକି ଅଛି ? ମନକୁ ଧରିରଖିଲେ ଯେଉଁ ଅହଙ୍କାର ଆସେ, ତାକୁ ଦଉଡ଼ିଯିବାପାଇଁ ଛାଡ଼ିଦେଲେ କ'ଣ ସେ ଗୌରବ ମଣିଷ ପାଏ ନାହିଁ ? ମନକୁ ଯିଏ ବଣ ଖମଣାରେ ଛାଡ଼ିଦେଇପାରେ— ସେ କ'ଣ ଜାଣେନାହିଁ ଯେ କେତେବେଳେ ନା କେତେବେଳେ ପଡ଼ି ତାର ହାତଗୋଡ଼ ଭାଙ୍ଗିଯିବ ! ତଥାପି ସେ ଛାଡ଼ିଦିଏ କାହିଁକି ? ସେ ଛାଡ଼ିଦେବାଟାରେ କ'ଣ ତାର ପୌରୁଷ ପ୍ରକାଶ ପାଏନାହିଁ— ତାକୁ କ'ଣ ସେଥିପାଇଁ ତମେ ଭୀରୁ ବୋଲି କହିବ ?

ନହେଲା ନାହିଁ । ମନକୁ ମୁଁ ତା ବାଟରେ ସହଜ ସିଧା ରାସ୍ତାରେ ଯିବାପାଇଁ ଛାଡ଼ି ଦେଇଛି । ମତେ ତମେ ନିନ୍ଦା କରୁଛ— ତମ ସମାଜ, ତମ ଧର୍ମ, ତମ ନ୍ୟାୟ ନୀତିସବୁ

ମୋର ମୁହଁ ବନ୍ଦ କରି ରଖିଛି— ସେଇଥିପାଇଁ । ମନ କ'ଣ ସେକଥା ବୁଝୁନାହିଁ ? ତମରି ମନକୁ କ'ଣ ଏଇଟା ଅଛପା ରହିଛି ? ତମରି ମନ କ'ଣ ତମକୁ ହସୁନଥିବ ?

ମୋ ଜୀବନର ଧାରା ବଦଳିଯାଇଛି— ଯେଉଁ ବାଟ ମୋପାଇଁ ପଡ଼ିଥିଲା ଆଗରୁ, ଯେଉଁ ବାଟରେ କେତେ ଯେ ଲୋକ ଚାଲିଗଲେଣି, ଅନ୍ତତଃ ଲୋକେ କହୁଛନ୍ତି ଏଇ ବାଟ ଦେଇ ସେମାନେ ଯାଇଛନ୍ତି ବୋଲି— ସେ ବାଟକୁ ମୁଁ ଛାଡ଼ିଛି— ନା ଛାଡ଼ିବାକୁ ଯାଉଛି । ଭୟ ହେଲା । ପୁଣି ଗର୍ବ ବି ହେଲା ।

ଆଗରେ, ଦକ୍ଷିଣ ପାଖ ଝରକାରେ ଚାହିଁଲେ ମନ୍ଦିରର ନୀଳଚକ୍ର ଦିଶେ । ତା'ଉପରେ ନେତ ଉଡୁଛି । ମୋର ମନେହେଲା, ଯେମିତି ଏଇ ଚକ୍ର, ସେ ସୃଷ୍ଟିହେବା ଦିନରୁ କେତେ ନିରୀହ ବୁକୁର ରକ୍ତ ଯେ ପିଇଛି— ଏଇ ନେତ କେତେ ଦୁର୍ବଳକୁ ଜୟ କରିବାର ଭୀରୁ ଗୌରବରେ ଯେ ସେ ନିର୍ଲଜ୍ଜ ମୁଖରେ ଉଡୁଛି— ତାର କଳନା ନାହିଁ— ଧାରଣା ବି ହେବ ନାହିଁ ।

ଆଉ ସେ ଠାକୁର ! ଠାକୁର ମୁଁ ମାନେନାହିଁ । କାହିଁକି ମାନିବି ? ଯେଉଁ ଠାକୁର ଜନ୍ମ ଦେଇଛି ବୋଲି ତମେ କହୁଛ, ସେ ଯଦି କର୍ମ ନଦେଲା, ତେବେ ସେ ଠାକୁର ଥାଇ କେତେ ନଥାଇ କେତେ ? ଠାକୁର ବୋଲି କହିଲେ ଭୂତଡର ପରି ଗୋଟାଏ ଡର ଲାଗୁଥିଲା ଆଗେ । ଭୂତପାଖକୁ ଯାଇ ମଣିଷ ଯେତେବେଳେ ଦେଖିନିଏ ଯେ ସେଠି ଭୂତ ନାହିଁ— ସେଇଟା ଥୁଣ୍ଟା ଗଛଟାଏ— କି ଛାଇଟାଏ— କି ଆଖିର ଗୋଟେ ଭ୍ରମ, ସେତେବେଳେ ତାର ଭୂତଭୟ ଭାଙ୍ଗିଯାଏ— ଆଉ ସେ ଭୂତକୁ ଡରିବ କାହିଁକି ?

ମଣିଷ ବେଳେ ବେଳେ ସେଇ ମିଛ ଭୂତଟାକୁ ଦେଖି ଡରିଯାଏ । ହାଉଳି ଖାଇ ମୂର୍ଚ୍ଛା ହୋଇପଡ଼େ । ଭୂତ ଥାଉ ନ ଥାଉ,— ଭୂତ ସତ ହେଉ ମିଛ ହେଉ, ମଣିଷର ଚେତା ବୁଡ଼ିଗଲା ପାଖରୁ ଆଉ ତା'ର ପୁଣି କି ଭୂତଭୟ ?

ମୋର ଠାକୁରଭୟ ଛାଡ଼ିଯାଇଛି । ଠାକୁର ବିଶ୍ୱାସ ପୋଡ଼ିଯାଇଛି । ଯେତେବେଳେ ଠାକୁରଙ୍କୁ ମାନୁଥିଲି— ଡରୁଥିଲି, ସେତେବେଳେ ଠାକୁର ଆଗକୁ ଯାଇ ଡାକିଲି— ଚିତ୍କାରକଲି— କାନ୍ଦିଲି— ନେହୁରା ହେଲି— ଠାକୁର ଶୁଣିଲାନାହିଁ— ଠାକୁର ପଥର । ପଥର ପରି ସେମିତି ଠିଆହୋଇ ରହିଲା— ପାଟି ତୁଣ୍ଡ ଫିଟିଲାନାହିଁ— ହାତ ଗୋଡ଼ ଚଳିଲାନାହିଁ— ମୁଁ ତା' ଗୋଡ଼ ତଳେ ମୁଣ୍ଡ ବାଡ଼େଇଦେଲି— କହିଲି- ''ଠାକୁରେ, ମୋ ଗୁହାରି ଶୁଣ'' ତଥାପି— ତଥାପି ତ ସେ ପାଷାଣ ଦିଅଁର ଦିହ ହଲିଲାନାହିଁ— ଛାତି ଥରିଲାନାହିଁ— ଆଜି ଆଉ ପୁଣି ସେ ବଞ୍ଚିଛି ବୋଲି— ସେ ଅଛି ବୋଲି କାହିଁକି ମାନିବି ମୁଁ— ମୋର କି ଲୋଡ଼ା ? ଯଦି କେହି ଠାକୁର ଥାଏ, ତେବେ ସେ ଆଉ କାହାରି ଠାକୁର ହେଇଥିବ— ଆଉ କାହାରି କ'ଣ କରିଥିବ— ନଇଲେ ସେ ସ୍ୱାର୍ଥପର ହେଇଥିବ । ମୋର ସେ କିଛି କରିନାହିଁ— ମୋ ଠାକୁର ସେ ନୁହେଁ— ମୋର ଠାକୁର ନାହିଁ । ସେଥିପାଇଁ ବିନା ଠାକୁରରେ, କେଉଁ ଠାକୁରକୁ କିଛି ନମାଗି ମୁଁ ନିଜେ ନିଜ ପାଇ କ'ଣ କରିପାରିଛି, ସେଇୟା ଦେଖିବାକୁ ଏକା— ଏକଦମ୍ ଏକା ବାହାରିଛି ।

ଆଉ ବା ଡରିବି କାହିଁକି ସେ ଠାକୁରକୁ ? ଠାକୁର ମୋର କ'ଣ କରିବ ? ସବୁଠାରୁ ବଡ଼ ଦୁଃଖ, ସବୁଠାରୁ ବଡ଼ ବିପଦ ଯେଉଁଟା ବୋଲି ମୁଁ ଦିନେ ମନେ ମନେ ଡରୁଥିଲି, ଯାହାକୁ ସବୁ ମାଇପେ ସବୁବେଳେ ଡରି ଠାକୁରକୁ ମୁଣ୍ଡିଆ ମାରୁଥାନ୍ତି— କି ଠାକୁର ବରମୁଣ୍ଡିଆ ପାଇବାପାଇଁ ସବୁବେଳେ ସବୁ ଅଇହ ମାଇପୀଙ୍କୁ ଯେଉଁ କଥାଟାପାଇଁ ଡରଉଥାନ୍ତି— ସେ ବିପଦ, ଦୁଃଖ ତ ଥରେ ମୋର ଚେତା ହଜାଇ ଚାଲିଯାଇଛି— ସେ ବିପଦର ଭୟ ତ ଭାଙ୍ଗିଯାଇଛି,— ସେ ବିପଦ ତ ଆଉ ଥରେ ଆସିବନାହିଁ ଜୀବନରେ— ଆଉ ପୁଣି ସେଥିପାଇଁ ମୁଁ ଠାକୁରକୁ ଡରିବି କାହିଁକି ? ଠାକୁର ମୋର କ'ଣ କରିବ ?

ମଣିଷର ସ୍ୱଭାବ, ନିଜର ଯେତେଗୁଡ଼ାଏ ଭୁଲ ଠିକ୍, ନିଜର ଯାହା କିଛି ଭଲମନ୍ଦ ଦୁଃଖସୁଖ ସେଗୁଡ଼ାକ ପାଇଁ ଜଣକୁ ଦାୟୀ କରିବା । ଭୁଲଟାଏ ହୋଇଗଲେ, ସେଇଟା ଯେ ନିଜର ଭୁଲ, ଏକଥା ମଣିଷ ମାନିବାକୁ ଚାହେଁନାହିଁ । ମାନିଲେ ସେ ମନକୁ ବୋଧ ଦେବ କେମିତି ? ତାର ସୁଖ ସୌଭାଗ୍ୟପାଇଁ ସେ ଯେ ନିଜେ ଦାୟୀ, ତାର ସଂପଦ ଯେ ନିଜ ହାତରେ କରିଛି, ଏକଥାଟା ବି ତାର ସ୍ୱୀକାର କରିବାକୁ ସାହସ ହୁଏନାହିଁ । କାରଣ ସେ ଭାବେ, ଯେତେବେଳେ ତାର ଦୁଃଖ ଆସିଯିବ, ସେତେବେଳେ ତ ସେଥିପାଇଁ ସେ ଅନ୍ୟ କାହାକୁ ଦାୟୀ କରିପାରିବନାହିଁ— ଦୋଷୀ କହିପାରିବନାହିଁ ! ଦାୟୀ କଲେ ବି କିଏ କାହିଁକି ସେ ଦାୟିତ୍ୱ ମୁଣ୍ଡାଇବାକୁ ଯିବ ? ସେଥିପାଇଁ ମଣିଷ ଗୋଟାଏ ମୂକ ଠାକୁର ଥାପନା କରି, ଗୋଟାଏ ଅରୂପ ଭଗବାନ କଳ୍ପନା କରି ପୂଜା ଦିଏ— ସମ୍ପଦରେ ବିପଦରେ ତାରି ମୁଣ୍ଡରେ ସବୁ ଗଡ଼େଇଦେବାପାଇଁ— ମଣିଷର ନିଜ ଉପରେ ସେଇ ଭରସା— ସେଇ ବିଶ୍ୱାସଟିକକ ନଥାଏ ବୋଲି ।

ମଣିଷର ଦୁର୍ବଳତାର ପ୍ରତିକୃତି ଭଗବାନ୍—

ମୁଁ କାହିଁକି ପୂଜା କରିବି ତାକୁ ? ଠାକୁର ବସେଇ ପୂଜା କଲେ— ଠାକୁର ଉପରେ ଦୋଷତକ ଲଦିଦେଲେ ବି ମୋର ଆଉ ପ୍ରତିକାର ନାହିଁ । ଯେଉଁ ପ୍ରତିକାରପାଇଁ ଠାକୁର ପୁରାଣ ପୋଥିରେ କହିଛି, ସେ ପ୍ରତିକାର ନୁହେଁ— ସେଇଟା ଶବସତ୍କାର— ଶବସଂସ୍କାର । ଯେଉଁ ଠାକୁର ଦୁଃଖକୁ ରୋକିପାରିଲାନାହିଁ— ସେଇ ଠାକୁର ପୁଣି ଦୁଃଖରେ ପଡ଼ିସାରିଲେ, ସେଥିରୁ ଉଦ୍ଧାରିବାପାଇଁ ବାଟ କହିଦେବ ? ହସିବା କଥା— ଅଲାଗିଲା କଥା— ସୁଆଙ୍ଗ— ଲୀଳା ।

ମୁଁ ସେଥିପାଇଁ ଆଜି ମୋ ଦୁଃଖର ପ୍ରତିକାର ମୁଁ ନିଜେ ଖୋଜି ବାହାର କରିଛି । ମୁଁ ବେଶ୍ ଦେଖୁଛି, ତାର ପ୍ରତିକାର ମନକୁ ବାନ୍ଧି ରଖିବାରେ ନାହିଁ; ଅଛି— ମନକୁ ମୁକ୍ତି ଦେବାରେ ।

X X X X

ମୋ ଦେହ ଭଲହୋଇଗଲାଣି । କିନ୍ତୁ ଭିକାରିକୁ ଖୁବ୍ ନିକଟରେ ପାଇବାପାଇଁ ମୁଁ ଛଳନାକରି ବିଛଣାରେ ପଡ଼ିଥାଏଁ ।

ଦେହ ଖରାପ ଥିଲେ ବି ସେଇ ଫଟଟାକୁ ମୁଁ ନିତି ଝାଡ଼ିଝୁଡ଼ିକି ଯତନରେ ରଖି ଦେଇଥାଏଁ । ଆଜି ବି ସେଇଆ କଲି । ଯେମିତି ଦାନ୍ତଘଷିବା, ଝାଡ଼ାଫେରିବା ଗୋଟାଏ

କାମ– କରିବାକୁ ହେବ– ସେଇମିତି । ଗୋଟାଏ ଅଭ୍ୟାସପଡ଼ିଗଲାଣି । ମନ ତାକୁ ଖାତିର୍ କରେନାହିଁ । ମନ ତାକୁ ଅନାଏନାହିଁ– ଚାହେଁନାହିଁ ।

ଫଟଟା ପୁରୁଣା ହୋଇଗଲାଣି । ମସିଆ ହୋଇଗଲାଣି । ନିତି ଚାହିଁ ଚାହିଁ ମନ ଚିଟା ଧରିଗଲାଣି । ମନ ଖୋଜୁଛି ନୂଆ ।

କିନ୍ତୁ ନୂଆ ହବ କ'ଣ ? ମୁଁ କ'ଣ ନୂଆ ପାଇନାହିଁ ? ନୂଆ ଫଟଟା କରିଆଣିବି । ଫିକାସିଆ ରଙ୍ଗଟା ଚାଲିଯିବ– ସଫା ରଙ୍ଗ ହେବ । କିନ୍ତୁ ରୂପ ଆଉ କ'ଣ ନୂଆ ହେବ ?

ମନ ନୂଆ ଚାହେଁ । ମୁଁ ତାର ଏ ଅଳିକି ଅସ୍ୱୀକାର କରିନାହିଁ ତ ?

ମୁଁ ଭିକାରିକି ଭଲପାଇଲି କାହିଁକି ? ମନ କ'ଣ ମୋର ଏ ଦାନକୁ ଫାଙ୍କିଦେବ ?

କିନ୍ତୁ ମୋର ଡର ହେଲା, ମନ ପୁଣି ଆଉ ନୂଆ ଚାହିଁବନାହିଁ ତ !

ନା– ନା, ତା ହୋଇପାରେନା– ଭିକାରି ମୋର ସବୁବେଳେ ନୂଆ । ମନ ଭିକାରିକି ଫିଙ୍ଗଦେଇପାରିବନାହିଁ । ଫିଙ୍ଗିଦେଲେ ମୁଁ ତାକୁ ଡୋଳିଆଣି ପୁଣି ତା ସ୍ଥାନରେ ତାକୁ ନେଇ ପ୍ରତିଷ୍ଠିତ କରେଇବି । ମନ ନମାନିଲେ ପୁଣି ମନ ବିରୁଦ୍ଧରେ ବିଦ୍ରୋହକରିଉଠିବି ।

X X X X

ଆଜି ବି ରାତିରେ ସେ ଓଷଦ ଦେବାକୁ ଆସିଲା । ଓଷଦ ଦେଇ ଆପେ ଆପେ ମୋ ପାଖରେ ବସିଲା । ମୋର ମନେହେଲା, ଭିକାରି ଆଜି ମୋର ଆହୁରି ନିକଟକୁ ଆସିଛି । ଦୁହେଁ ବସି କେତେ ଗପକଲୁଁ । କିନ୍ତୁ ସେ ଗପ ଶୁଣିବାକୁ ଯେମିତି ମୋର ଧୈର୍ଯ୍ୟ ରହୁ ନଥିଲା । ମୁଁ ଗପ ଚାହୁଁନଥିଲି; କିନ୍ତୁ ଭିକାରି ଚାଲିଯିବାପାଇଁ ବି ଚାହୁଁନଥିଲି । ଭିକାରି ଚୁପ୍ ରହିଲେ ବି ମୋତେ ଖରାପ ଲାଗୁଥିଲା ।

ଭିକାରି ଢୁଳେଇପଡ଼ିଲା ମୋ ମୁଣ୍ଡ ପାଖରେ । ମୁଁ ଟିକିଏ ଘୁଞ୍ଚି ଆସିଲି । ଚାରିଆଡ଼କୁ ଚାହିଁ ଦେଖିଲି, କେହି ନାହିଁ– ମୁଁ ଖୁବ୍ ଧୀରେ ଉଠିଲି । ଭିକାରିର ନିଦ ଯେମିତି ନ ଭାଙ୍ଗେ । ବାହାରେ ଯାଇ ଦେଖିଲି– କେହି ନାହିଁ । ଖାଲି ଖଣ୍ଡେ କଳାମେଘ ବାରିଆଡ଼ ଜାମୁଗଛ ମଥାନ ଉପରୁ କଳା କଳା ମୁଣ୍ଡ ଟେକି ଉଠିଆସୁଥିଲା । ମୁଁ ଫେରିଆସିଲି । କବାଟଟା ଉଦୁଆଁ ଥିଲା । ମେଘ ହେବ ବୋଲି ଆଉଜାଇଦେଲି । ଲଣ୍ଠନଟା ବଡ଼ ଜୋର୍‌ରେ ଜଳୁଥିଲା– ତେଲ ସରିଯିବ ବୋଲି କମେଇଦେଲି । ଚୁପ୍‌କିନି ଆସି ଖଟ ଉପରେ ଶୋଇଲି । ଭିକାରିକି ନିଦ ହୋଇଯାଇଥିଲା । ଓଃ ! ସତେ ଭିକାରି କି ସୁନ୍ଦର ! ମୁଁ ତା' ମୁହଁକୁ ଚାହିଁରହିଲି ।

ହଠାତ୍ ଦୁମୁକାଏ ପବନ ପଶିଆସି ଲଣ୍ଠନଟାକୁ ଧପ୍‌କିନି ଲିଭାଇଦେଲା । ପବନ କବାଟଟାକୁ ଧଡ଼ାସ କରି, ପୁଣି ଢୋ'କିନା ବନ୍ଦ କରିଦେଲା । ବାହାରେ ପବନ– ଝଡ଼– ବର୍ଷା ।

ଭିକାରି ! ମୁଁ ଭିକାରିକି ଡାକିଦେଲି ।

ଭିକାରି ଚମକି ଉଠିପଡ଼ିଲା– ଓଃ– ମୁଁ ଶୋଇଗଲି– ଆରେ !

ଭିକାରି !

କ'ଣ ?

ମୁଁ ଆଉ କିଛି କହିପାରିଲିନାହିଁ ।

ଭିକାରି ଆଖି ମଳୁଥାଏ ।

ଭିକାରି, ସେଇଠି ଶୋଇପଡ଼— ବର୍ଷା ହେଉଛି ।

ବର୍ଷା — ଓଃ, କହି ସେଇଠି ସତକୁସତ ଶୋଇଲା । ତାକୁ ଭାରି ନିଦ ମାଡୁଥିଲା ପରି ଜଣାଗଲା । ନିଦ ଅଳସରେ ମୋ'ରି ପାଖରେ ସେ ଶୋଇପଡ଼ିଲା । ଆଉ କେହି ନ ଥିଲେ ସେଠି ।

ପୁଣି ପବନଟା କବାଟକୁ ଧଡ଼୍ କଲା ।

ମୁଁ ଯାଇ କବାଟ କିଳିଦେଇ ଆସିଲି । କେହି ନଥିଲେ ।

ମୁଁ ଯାଇ ଭିକାରିର ପାଖରେ ଶୋଇଲି । ଲଗାଲଗି । ଭିକାରିର ନିଶ୍ୱାସ ମୋ ଦିହରେ ବାଜୁଥାଏ ।

ମେଘ ଛାଟୁଥାଏ— ପବନ ପିଟୁଥାଏ— ଝଡ଼ ତୋଫାନ !

ଭିକାରିର ହାତଟା ବୋଧହୁଏ ନିଦ ଅଳସରେ ଅସାବଧାନରେ, ମୋ ଉପରେ ପଡ଼ିଗଲା । ମୁଁ ଥରିଉଠିଲି । ଯେମିତି ଭାରି ଶୀତ ।

ମୋ ଇଚ୍ଛା ବିରୁଦ୍ଧରେ— ମୋର ସଙ୍କୋଚ ନମାନି ମୋ ଦିହଟା ଆଉ ଟିକିଏ ଭିକାରିର ପାଖ ହେଇଗଲା । ଭିକାରିର ହାତଟା ମୋତେ ଯେମିତି ଭାରି ଲାଗିଲା ।

ମୁଁ ଆଖି ବୁଜିଦେଲି । ଚାହିଁପାରିଲିନାହିଁ ।

ସେଇ ଅନ୍ଧାର ଭିତରେ ପୁଣିଥରେ ଆଖି ଖୋଲିଲି । ମନେହେଲା— ଅନ୍ଧାରଟା ଯେମିତି ମଣିଷର ସବୁଠାରୁ ବଡ଼ ବନ୍ଧୁ । ମୁହଁକୁ ମୁହଁ ଦିଶୁନାହିଁ— ଏମିତି ଅନ୍ଧାର !— ସେଇ ନିଶବ୍ଦ ନିଝୁମ ନିଥର ଅନ୍ଧାର ଭିତରେ ମୁଁ ନିଜକୁ ଯେତେ ପରିଷ୍କାର ଭାବରେ ଦେଖିପାରିଲି, ଏମିତି ଆଉ କେବେ କେଉଁଦିନ କେଉଁ ଆଲୁଅରେ ବି ଦେଖାଯାଇନଥିବ ।

ଅନ୍ଧାର ଭିତରେ ଯେମିତି ମଣିଷର ନିଜ ଖିଆଲଟା ବଡ଼ ବେଶି ! ଅନ୍ଧାର ଭିତରେ ମଣିଷର ସେଇ ମନଟା ଯେମିତି ରୂପ ଧରି ଠିଆହୋଇଛି !

ଅନ୍ଧାର ଭିତରେ ନିଜ ଛଡ଼ା, ନିଜର ଉତ୍ତେଜନା ଛଡ଼ା, ଆଉ ଯେମିତି କିଛି ନାହିଁ ।

ଅନ୍ଧାର ଭିତରେ, ବାହାରର ଧର୍ମ ସମାଜ, ଆଚାର-ବ୍ୟବହାର, ଆଇନ-କାନୁନ ବାରଣ-ବାଧା, ନ୍ୟାୟ-ନୀତି କେହି ଯେମିତି ମୋତେ ଦେଖିପାରୁନାହାନ୍ତି ।

ଏଠି କେବଳ ମୁଁ ଅଛି । ସେ ନାହାନ୍ତି— ବିଭୂତି ନାହିଁ— ଭିକାରି ବି ନାହିଁ । ମୋତେ ସେଥିପାଇଁ ଡର ମାଡୁଛି । ମୁଁ ଆଗପଛ ଭାବିପାରୁନାହିଁ । ମୋର ନିଜର ଏଇ ଉତ୍ତେଜନା ଉନ୍ମାଦନାଟା ସବୁଠୁଁ ବଡ଼ହୋଇ ଠିଆହେଉଛି— ସମସ୍ତଙ୍କୁ— ଶେଷରେ ମୋତେ ବି ଗ୍ରାସ କରି ।

ଭିକାରିର ନିଶ୍ୱାସ ମୋର ଖୁବ୍ ପାଖରେ । ଗରମ ! ବାହାର ଥଣ୍ଡାପବନ ତାକୁ ଶୀତଳ କରିପାରୁନଥିଲା ।

ମୁଁ ଶେଷଥରପାଇଁ ନିଜକୁ ପଚାରିଲି– ମୋର ଏହି ଚଞ୍ଚଳତା, ଚପଳତା, କ'ଣ ଉଚିତ– ନ୍ୟାୟ ? ମୁଁ କ'ଣ ପାପ କଲି– ମୋର କ'ଣ ଅନ୍ୟାୟ ହେଉଛି କେଉଁଥିରେ ?

ନା– ନା, କେଉଁଠି ନୁହେଁ । ମୁଁ ପୁଣି ଥରେ ଜୋର୍ ଦେଇ ନିଜକୁ ମାନିବାକୁ ବାଧ କଲି– ଭଲପାଇବାଟା କେବେ ଅନ୍ୟାୟ ହୋଇପାରେନା– ଅଧର୍ମ ହେଇପାରେନା– ଭଲପାଇବାଟା ମନର ସ୍ୱଭାବ– ମନର ଧର୍ମ ।

ମୋ ମୁଣ୍ଡ ଉପର ଠଣାରୁ– ଯେଉଁଠି ଫଟ ଥିଲା– ସେଠୁଁ କିଏ ଯେମିତି କହିଲା– ତାହେଲେ, ମୋତେ ଭଲନପାଉଛୁ କିଆଁ ? ମୋତେ ଭଲପାଇବାଟା କ'ଣ ମନର ଧର୍ମ ନୁହେଁ ?– ଭଲପାଇ ପୁଣି ଭୁଲିଯିବା କ'ଣ ଧର୍ମ– ନ୍ୟାୟ ?

ମୋର ଅନ୍ତର ଚିତ୍କାର କରିଉଠିଲା– ନା– ନା, ଭଲପାଇବାଟା ମଣିଷର ଧର୍ମ ନୁହେଁ, ମନର ସ୍ୱଭାବ ନୁହେଁ– ଭଲପାଇବାଟା ମନର ବିକାର !

ତଥାପି– ତଥାପି ସେଇଟା ସତ୍ୟ– ସେଇଟା ଶିବ– ସେଇଟା ଇ ସୁନ୍ଦର !

ଭିକାରି ନିଦରେ ଶୋଇଥିଲା– ହଁ, ନିଦରେ ଶୋଇଥିଲା । ନିଦ ଅଳସରେ ସେ କଡ଼ ଲେଉଟାଇଲା । ମୋ ବାହୁ ଉପରୁ ଲୁଗାଟା ଖସିପଡ଼ିଥିଲା । ତା'ର ଓଦା ଗରମ ଓଠଟା ମୋର ବାଜିଗଲା ସେଇଠି ।

ମୁଁ ଚମକିପଡ଼ିଲି । ମୋର ଚେତା ହଜିଯାଉଥିଲା ।

X X X X

ମୁଁ ଭାବିଲି– ମୁଁ ତାଙ୍କଠାରେ ଅବିଶ୍ୱାସୀ ହୋଇନାହିଁ ତ– ଭିକାରିଠାରେ ଅବିଶ୍ୱାସୀ ହୋଇନାହିଁ ତ ! ପୁଣି ଥରେ ଆଖି ବୁଜିଦେଲି । ସେଇ ଅନ୍ଧାର ଭିତରେ ମୋତେ ପୁଣି ଯେମିତି କିଏ ଜଣେ କହିଲା– ନା– ନା, ମଣିଷ କେବେ ଅଣବିଶ୍ୱାସୀ ହେଇପାରେନା । ଯଦି କେହି କେବେ ଅଣବିଶ୍ୱାସୀ ହୋଇଥାଏ– ଅଣବିଶ୍ୱାସୀ ହୁଏ– ତେବେ ତା'ର ଏଇ ଚପଳ ମନଟା ।

ଧଡ଼କରି ତଳେ ଗୋଟେ କ'ଣ ପଡ଼ିଲା ।

ବିଲେଇଟା, ଖଟ ଉପରେ ଚଢ଼ି, ସେ ଠଣା ଉପରକୁ ଯାଇଁ ଫଟଟାକୁ ଖସେଇ ପକେଇଛି ।

ସବୁ ଭାଙ୍ଗି ଚୂନା ହେଇଯାଇଥିଲା ।

---

# ପ୍ରାଣ

ସେଦିନର କଥା ।

ଜୀବନଟା ଯାହାଙ୍କର ଖେଳଘର, ତାଙ୍କ ଦିନ ଅଲଗା ।

ଝାଳବୁହା ଦିନଗୁଡ଼ାକର ଧରାବନ୍ଧା ତାଳଗଛରେ ଯେଉଁ ଜୀବନର ଧାରା ସେ ଆଉ ଗୋଟାଏ ପ୍ରକାରର ।

ଜୀବନ ସାଙ୍ଗରେ ଲଢ଼ାଭିଡ଼ା କରି ସାତ କଚଡ଼ା ଖାଇବା ପରେ ଯିଏ ବେହିଆ ମୁହଁରେ ମୋର କିଛି ହେଇନାହିଁ ବୋଲି କହି ସେଇ ଜୀବନଟାକୁ ନେଇ ବୁଲେ, ମୋର ସେ ଜୀବନ ନଥିଲା ସେଦିନ ।

ଜୀବନଟାକୁ ଗୋଟାଏ ମସ୍ତ ଭାର ବୋଲି ମନେକରି, ତାକୁ ବହିଚାଲିବାର ପୌରୁଷରେ ଯିଏ ମତୁଆଲା, ସେ ଲୋକ ମୁଁ ନଥିଲି ସେତେବେଳେ । ମୁଁ ଭାବୁଥିଲି– ଜୀବନଟା ଗୋଟାଏ ଜୀବନ୍ତ ମରଣ ।

ତଥାପି, ମରଣର ସେଇ ଜୀବନ୍ତ ରୂପଟାକୁ ଧରି କଣ୍ଢେଇ ଖେଳିଲା ପରି, ଓଲଟ ପାଲଟ କରି, ଏପାଖ ସେପାଖ କରି ଦେଖୁଥିଲି, ୟାକୁ ନେଇ ମୁଁ କ'ଣ କରିବି– ଏଥିରୁ ମୁଁ କ'ଣ ପାଇବି– ମୋର ଏଥିରେ କ'ଣ ହେବ ?

ସେ ନିନ୍ଦା, ସେ ଅପବାଦ, ସେ ଘୃଣା ଭିତରେ ମୁଁ ଦେଖୁଥିଲି ଏ ଜୀବନରେ କିଛି ଉପଭୋଗ କଲାଭଳି ଜିନିଷ ଅଛି କି ନାହିଁ ।

ମୁଁ ଦେଖିଲି– 'ଏତେ ଲୋକ' ସେ ଘରର ଯାବତ ଲୋକ, ଚାକରବାକର, ସାଇ ପଡ଼ିଶା, ବଡ଼ ଛୋଟ– ଯାହାଙ୍କ ସାଙ୍ଗରେ କିଛି ସମ୍ପର୍କ ନାହିଁ– ନଥିଲା– ରହିବ ବି ନାହିଁ, ସେଇଭଳି କେତେ ଲୋକଙ୍କ ଭ୍ରୂକୁଟିର ମୂଲ୍ୟରେ ମୁଁ ପାଇଛି ଗୋଟାଏ ଅପୂର୍ବ ଜିନିଷ । ସେ ଜିନିଷଟା କ'ଣ, ସେ ଜିନିଷଟା କେମିତିକା, ସେ ଜିନିଷଟା କେତେଦୂର ଆପଣାର, ନିଜ ଜୀବନ ସାଙ୍ଗରେ ସେ କେମିତି ଖାପଖାଇବ– ସେଇଟା ମୋର କେତେ ନିକଟ ହୋଇପାରେ– କେତେ ବିଶ୍ୱସ୍ତ ହୋଇପାରେ ସେଇଟା ଥରେ ଦେଖିନେବାପାଇଁ– ସେ ପଛେ ମୋର ମାନ-ମହତ ଧନ-ଜନ ମନ-ପ୍ରାଣ ସବୁରି ମୂଲ୍ୟରେ ହେଉ– ଥରେ ଖାଲି ପରଖିନେବାପାଇଁ ଚପଳାଙ୍କୁ ଭଲପାଇଥିଲି ।

ଚପଳାଙ୍କୁ ମୁଁ ଭଲପାଇଥିଲି, ନାହିଁ– ଚପଳା ମୋତେ ଭଲଲାଗୁଥିଲେ । କାହିଁକି ଭଲଲାଗିଲା ମୁଁ କହିପାରିବିନାହିଁ । ଭଲଲାଗିବାର ଯେଉଁସବୁ ମୂଳସୂତ୍ର ଅଛି, ସେସବୁ ଯେ କେତେଦୂର ଏ କ୍ଷେତ୍ରରେ ପ୍ରଯୁଜ୍ୟ, ତା'ର ମୀମାଂସା ମଧ୍ୟ ମୁଁ କରିପାରିବିନାହିଁ । ତେବେ ଏତିକି କହିପାରେ ଯେ, ଭଲପାଇବାପାଇଁ ବୋଧହୁଏ ଭଲଲାଗିଥିଲା ।

ଆଉ, ଭଲପାଇଥିଲି, ବୋଧହୁଏ ଜୀବନଟା କ'ଣ ଆଉ ଥରେ ଭଲକରି କଷି ଦେଖିନେବାପାଇଁ ।

ଜୀବନଟାକୁ ଆପଣା ବାଟରେ ବହିଯିବାର ଦେଖିଲେ ଯେଉଁ ଆନନ୍ଦ ହୁଏ, ତାକୁ ମୁଁ ଶିରାରେ ଶିରାରେ ଅନୁଭବ କରିବାପାଇଁ ଭଲପାଇଥିଲି କି କ'ଣ !

ମଣିଷ ଯଦି ମରିବାଟାକୁଇ ଶ୍ରେୟ ମନେକରେ– ଦୁଃଖକଷ୍ଟ ଆଉ ଯନ୍ତ୍ରଣାର ଜୀବନ ଯଦି ଏକାବେଳକେ ଅସହ୍ୟ ହୋଇପଡ଼େ ତାହେଲେ ପୂରାପୂରି ମରିବା ଆଗରୁ ସେଇ ମରଣ ଉପରେ ଜୀବନଟାକୁ ଆଉରି ଥରେ ପ୍ରତିଫଳିତକରି ଦେଖିନେବାର ପ୍ରବୃତ୍ତି ଧରି ଭଲପାଇଥିଲି ବୋଲି ଯଦି କୁହାଯାଏ, ତା ହେଲେ ବି ମୁଁ ତାର ପ୍ରତିବାଦ କରିପାରିବିନାହିଁ । ଜୀବନର ଯେଉଁ ଅଂଶଟା ସରିଗଲାଣି, ମରିଗଲାଣି, ତାରି ଅନ୍ତ୍ୟେଷ୍ଟି କରିବାକୁ ଭଲପାଇଥିଲି ବୋଲି ଯଦି କହେଁ, ତେବେ ଅନ୍ୟାୟ ହେବନାହିଁ ।

ନିଜର ମନ ବଦଳେଇବାପାଇଁ, ଦୁଃଖଟାକୁ ସୁଖ ବୋଲି ମାନିନେବାର ଖିଆଲରେ ଭଲପାଇଥିଲି ବୋଲି କହିଲେ ବି ଚଳିବ ।

କିନ୍ତୁ ମୁଁ ତାଙ୍କୁ ଭଲପାଇଥିଲି । ସେ ଭଲପାଇବାଟା କେମିତି ଭଲପାଇବା, ତା' ବି ମୁଁ କହିପାରିବିନାହିଁ । ମୁଁ ତାଙ୍କୁ ଭଲପାଇବା ଭଳି ଭଲପାଇଥିଲି । ସମସ୍ତେ ଯେମିତି ଭଲପାଆନ୍ତି, ହୁଏତ ସେମିତି । କିନ୍ତୁ ମୋତେ ଲାଗୁଥିଲା ଏଟା ନୂଆ ।

ଜୀବନଟା ନଈ ସୁଅ ପରି ବହିଚାଲିଥାଏ । କେତେବେଳେ କେଉଁ କୂଳ ଖାଏ ତାର ଠିକ୍ ନାହିଁ । କେଉଁ କୂଳ ଛାଡ଼ିଯାଇଛି ବୋଲି ସେ ଆଉ ପଛକୁ ଫେରେ ନାହିଁ– ଉଜାଣି ବହେ ନାହିଁ । ଜୀବନର ଯେଉଁ ମୁହୂର୍ତ୍ତଗୁଡ଼ାକୁ ଏଇ ନିଃଶ୍ୱାସ ସାଙ୍ଗରେ ଉଡ଼େଇଦେଇଯାଇଛି, ତାକୁ ଫେରେଇଆଣି, ଚପଳାକୁ ସେଇ ଅବସ୍ଥାରେ ପୁଣି ଥରେ ଭଲପାଇ ପରଖ କରିବାର କଳ୍ପନା ମୋର ନଥିଲା । ନୂଆ ଜୀବନରେ ଚପଳା ନୂଆ ଭେଟି । ଏଥିରେ ଗତଦିନର ହଜିଗଲା ଜୀବନ ପାଇଁ ଟିକିଏ ହେଲେ ମମତା ନାହିଁ । ତଥାପି ମୁଁ ତାକୁ ଭଲପାଇଛି । ସେଦିନର ଉପକରଣ ଆଣି ଏଠି ଯୋଡ଼ିଲେ ସେ ଯୋଡ଼ି ହେବ ନାହିଁ । ଏଥିପାଇଁ ଏ ଭଲପାଇବା ସାଙ୍ଗରେ ଗଲା ଦିନର ଭଲପାଇବାକୁ ତୁଳନା କରିବା ଠିକ୍ ନୁହେଁ । ଆଜିକାର ହୃଦୟଟାକୁ ସେବକାର ହୃଦୟ ଜାଗାକୁ ଟାଣିନେଲେ ଭୁଲ୍ ହେବ ।

ସେଦିନ ମୋର ଥିଲା । ମୁଁ ସେକଥା ଭୁଲିନାହିଁ । ସତେ କ'ଣ ଭୁଲିପାରିବି ? ହଁ, ମୁଁ ଭୁଲିଯିବି– ମୁଁ ଭୁଲିପାରିବି– କିନ୍ତୁ ଏଇ ଜଖମ ଛାତିଟା ମୋତେ ପାରୁନାହିଁ ଭୁଲି ତାକୁ– ସେ କ'ଣ ସତେ ଭୁଲିପାରିବ ? ସେଇଥିପାଇଁ ତ ଏତେ ଭଲପାଇବା– ସେଇଥିପାଇଁ ତ ଏ ନୂଆ ପ୍ରାଣ !

X X X X

ମା' ଯେଉଁଦିନ ମରିଗଲା ମୁଁ ଜାଣିଲି ମୋର ସବୁ ସରିଗଲା । ମୁଁ ବୁଝିପାରିଲି ମୋ' ମା ଡାକ ଏଇଠୁଁ ଶେଷ । ମା' ମୋର ଆଉ ଫେରିବନାହିଁ । ପୁଅ ବୋଲି ଯେଉଁ ଟାଣ ସେ ତାକୁ ଫେରେଇ ଆଣିପାରିବନାହିଁ । ମୋର ବି ଆଉ ସେଦିନ ଫେରିବ ନାହିଁ ।

ସମସ୍ତେ କହିଲେ, ମୋ ମା' ମରିଗଲା । ମୁଁ ବି ଜାଣିଲି, ମୋ ମା' ମରିଗଲା । ମୁଁ ଛୁଆଟିଏ ହେଇନଥିଲି । ମା' ସେ ଗାଁକୁ ଯାଇଛି– ଧାନ କୁଟିବାକୁ ଯାଇଛି କି ମାମୁଁ ଘରକୁ ଯାଇଛି– ଏକଥା ଶୁଣି ବହଲିଯିବା ଭଳିଆ ଛୁଆ ମୁଁ ହେଇନଥିଲି ।

ନକୁଳାର ମା' ମରିଗଲା । ସେ ତା ବାପାକୁ ଯାଇ ପଚାରିଲା— ବାପା, ମା'ର କ'ଣ ହେଇଚି ?— ସେ ଉଠୁନାହିଁ କାହିଁକି— ମୁଁ ଦୁଧ ଖାଇବି । କିନ୍ତୁ ମୁଁ ନକୁଳା ପରି ହୋଇନଥିଲି ।

ମୁଁ ଜାଣିଲି— ଭଲକରି ଜାଣିଲି, ମୋ ମାଆ ମରିଗଲା । ମା' ଆଉ ନାହିଁ । ମୁଁ ଆଉ ତାକୁ ଦେଖିପାରିବି ନାହିଁ । ମୁଁ ବେଶି ବୁଝିପାରିଲି ମା'ର ସ୍ନେହ ସୁଖ ମୁଁ ଆଉ ଏ ଜୀବନରେ କେବେ ପାଇବିନାହିଁ । ମୁଁ ଏଟା ବି ବୁଝିଲି— ମୋତେ ଆଉ ଧାନକୁଟି ପାଠ ପଢ଼େଇବାପାଇଁ କେହି ନାହିଁ ।

ଦୁନିଆର ସମସ୍ତେ ଜାଣିଲେ, ମୋ ମା' ନାହିଁ । ଗଛପତ୍ର, କାଉ କୋଇଲି ସମସ୍ତେ । ସମସ୍ତେ ମୋତେ କହିଲେ— ତୋ ମା' ନାହିଁ ।

ଗାଁମୁଣ୍ଡ ମଶାଣି ବାଟ ଜଗି ଯେଉଁ ଛତରା ବରଗଛଟା ଅଛି, ମୋ ମା' ତା'ରି ଉପରେ ଭୂତହେଇ ରହିଛି ବୋଲି କେତେଲୋକ କହିଲେ । କିନ୍ତୁ ମୁଁ ଯେତେବେଳେ ଯାଇ ତା' ପାଖରେ ଠିଆହେବି ସେ ମୋତେ କହିବ— ମା' ତୋର ନାହିଁ ।

ମା' ନାହିଁ ? ଆଉ ରହିଲା କ'ଣ ?

ଇସ୍କୁଲ ଯିବା ବନ୍ଦ ହେଲା !

ହାତରେ ରାନ୍ଧି ବାପାକୁ ଖାଇବାକୁ ଦେଲି— ନିଜେ ଖାଇଲି । ଖାଇବା ବେଳକୁ ତଣ୍ଟି ଶୁଖିଯାଇଥାଏ । ତଣ୍ଟିରେ ଭାତ ଲାଗେ । ମା' ନାହିଁ— ଆଉ କିଏ ପାଣି ଢୋକେ ଦବ ପିଇବାକୁ ସେତେବେଳେ !

ବରଷା ଦିନ । ପାଣିକାଦୁଅରେ ବୁଲି ସରଦି ହୁଏ । ଗୋଡ଼ ହାତ ବିନ୍ଧେ । କିଏ ଆସି ଫୁଟାତେଲ ଗୋଡ଼ରେ ମାଲିସ୍ କରିଦେବ ? ମୋର କ'ଣ ମା' ଅଛି ?

କୁଆଁର ପୂନେଇ । ସମସ୍ତଙ୍କ ଘରେ ଚାନ୍ଦ ବଢ଼ାହେଲା । ବାଦ୍ ପଡ଼ିଲା ଆମରି ଘର । କାହିଁକି ?

ବାଛୁରୀଟା ପଶିଗଲା ଦାସଙ୍କ ଖଳାକୁ— ଛଣ ବିଡ଼େ ଅଧେ ଖାଇଗଲା । ଦାସେ ପାଞ୍ଚଣଟା ଧରି ବାଛୁରୀକି ପିଟିବେ କ'ଣ ନା ମୋତେ ଆଗ ଦି' ପାହାର ପକେଇଲେ— ଶଳା, କଉଁ ଜନମରେ ବାଛୁରୀ ରଖିଥିଲୁ ନା ! ମୁଁ କାନ୍ଦିଲି । ମୋପାଇଁ କିଏ କହିବ ? କିଏ ନଡ଼ିବ ? ମୋର ମା' ନାହିଁ । ଏଇ ଘା'ଟା— ଛାତି ଭିତରର ଏଇ ଫାଙ୍କାଟା ନେଇ ମୁଁ କ'ଣ କରିବି ? ଏ ଘା' କେମିତି ଶୁଖିବ ? ଫାଙ୍କ କେମିତି ପୂରିବ ?

ଧୂଆଁ ହୁଏ । ଚୁଲି ଫୁଙ୍କିଲେ ଆଖିରୁ ଝରଝର ହୋଇ ଲୁହ ବହିଯାଏ । ମା' ପାଇଁ ନୁହେଁ ।

ପିଲାଏ ପାଠପଢ଼ିଯାନ୍ତି— ଏଇବାଟେ ଇସ୍କୁଲକୁ ଯାନ୍ତି । ମୁଁ ତାଙ୍କୁ ଦେଖି ଘରେ ଆସି କାନ୍ଦେ । ମା' ପାଇଁ ନୁହେଁ ।

ବାପା ବେମାର ପଡ଼ିଲେ । ଉପାସ ରହିଲି । ଭୋକରେ ପେଟ ଆଉଟି ହୁଏ । ସମାଳି ନପାରି କାନ୍ଦେ । ସେ ବି ମା' ପାଇଁ ନୁହେଁ ।

ଯାତ୍ରାରେ ମିଶିଲି । ଲୀଳା କଲି । ପ୍ରହ୍ଲାଦ ହୁଏ । ଭଗବାନ୍‌କୁ ଡାକେ । କାନ୍ଦେ— ମିଛଟାରେ କାନ୍ଦେ । ସେ ବି ତ ମା'ପାଇଁ ନୁହେଁ ।

ଜୀବନରେ କେତେ କାନ୍ଦିଛି, କେତେ ଥର କାନ୍ଦିଛି । ମା'କୁ ଛାଡ଼ି ବି ଜୀବନରେ କାନ୍ଦିବାପାଇଁ ମୋର ଅନେକ ଜିନିଷ ଥିଲା । ମା'କୁ ଛାଡ଼ି ମୁଁ କାନ୍ଦୁଥିଲି । ସବୁବେଳେ ମୁଁ ମା'ପାଇଁ କାନ୍ଦିପାରିନାହିଁ । ସବୁଠାରୁ ବଡ଼ ଦୁଃଖ ମୋର ଏଇ ।

କିନ୍ତୁ ଏଇ ମା' ଯେ ମୋତେ କାନ୍ଦିବା ଶିଖେଇ ଦେଇଗଲା ଏକଥା ମୁଁ ଭଲ କରି ବୁଝିପାରିଥିଲି ।

X X X X

ଆହୁରି ବି କାନ୍ଦିବାପାଇଁ ମୋ ଭାଗ୍ୟରେ ଥିଲା ।

ମୁଁ ମାମୁଁଘରୁ ଫେରି ଦେଖିଲି, ଘରେ ଜଣେ ନୂଆ ମଣିଷ । ଆଉ ମୋତେ ତାକୁ ମା' ବୋଲି ଡାକିବାକୁ ହେବ ।

କେମିତି ଡାକିବି ? ମୋ ମା'କୁ ଯିଏ ଥରେ ମା' ବୋଲି ଡାକିଛି ସେ ପୁଣି କେମିତି– ମୋତେ କାନ୍ଦମାଡ଼ିଲା– ମୋ ତଣ୍ଟିରେ ଅଟକିଗଲା– ମୁଁ ଡାକିପାରିଲିନାହିଁ ପହିଲୁ ପହିଲୁ ।

ନା– ନା, ମୁଁ ସେକଥା କରିପାରିବିନାହିଁ । ଲୋକେ କହିଲେ– କନିଆ ମା'– ପିଲାଟାକୁ କ'ଣ ଦେଖିପାରୁଥିବ ! ହାୟରେ ! ମା'ଛେଉଣ୍ଡ ପିଲାଟି !

ପୁଣି ସେଇ ଲୋକ କହିଲେ– କନିଆ ମା' ପୁଣି ଏମିତି ହୁଅନ୍ତି ଏକଥା କେହି କେଉଁଠି ଦେଖିନଥିବ । ତା' ଆପଣା ମା' ଆଗ ଏମିତି ଶରଧା କରୁଥିବ ନା ?

ହଁ, ସେ ମୋତେ ଶରଧା କରେ । ମୁଁ କେମିତି କହିବି– ସେ ଶରଧା କରେନାହିଁ ବୋଲି । ଶରଧା ନକଲା ଭଳି, ଦେଖିନପାରିବା ଭଳି ଭାବ ମୁଁ କେବେ ଦେଖେନାହିଁ– ବାହାରକୁ କେହି କିଛି ବୁଝିପାରିବନାହିଁ ।

କିନ୍ତୁ ତଥାପି, ଯେଉଁଟା ଆଉ କେହି ବାହାର ଲୋକେ ବୁଝିପାରିବେନାହିଁ– ସେଇମିତି ଗୋଟାଏ ଜିନିଷ ମୁଁ ଦେଖୁଥିଲି । ଯେମିତି ସେ ଶରଧାରେ, ସେ ସ୍ନେହ ଭିତରେ ସେ ଦେଖିପାରିବା ଦେହରେ ପ୍ରାଣନାହିଁ । ଏଇ ନିଷ୍ଠୁର ଉଦାସୀନତା ମୋ ଆଖିରେ ଆଙ୍ଗୁଳି ଖେଞ୍ଚି ଦେଖେଇ ଦଉଥିଲା– ଭଲ ମା' ଆଉ ଭେଲ ମା' ଭିତରେ ତଫାତ୍ କ'ଣ ! ମୋର ମନେହେଲା ଏ ମା' ଆସିଲା ଦିନରୁ ବାପର ପୁଅର ଯେମିତି ଭିନେ ହେଇଗଲୁଁ । ବାପା ମା' କି ଯେମିତି ଗୋଟାଏ ତାଙ୍କର ଅଲଗା, ଆଉ ମୁଁ, ମୋ ହାତ ଗୋଡ଼ ଏସବୁ ମିଶି ଆଉ ଗୋଟେ ଭିନେ ତାଙ୍କଠୁଁ । ଗୋଟିଏ ରୂପର ତଳେ ଦୁଇଟା ତଫାତ୍ ବିନ୍‌ସୁଦ୍ ତଫାତ୍ ମନନେଇ ବାପା, ମା, ପୁଅ ଏମିତି ତିନିଜଣ ରହିଲୁଁ ।

କେତେ ଦିନ ରହିପାରନ୍ତୁ ! କେମିତି ରହନ୍ତୁ ! କେମିତି ଭଲଲାଗନ୍ତା ? ମୋତେ ଭଲଲାଗିଲାନାହିଁ ।

ବଡ଼ାରେ ସରସରକି ଦୁଧ ବସେଇ ମା' ବାପା ନାଗି ଦହି ରଖିଥାଏ, ମୁଁ ଦେଖିଥିଲି । ସକାଳେ ମା' ଯେତେବେଳେ ଗାଧୋଇବାକୁ ଗଲା, ସେତେବେଳେ ମୁଁ ଯାଇ ଉପରୁ ଉପରୁ ହାତରେ କାଠୁଆକାଠୁଆକି ଯେତେ ଆସେ ସେତେ ଉଠେଇଆଣି ସଡ଼୍‌କିନି ହାପୁଡ଼ିଦେଇ ପକେଇଲି ଦାଣ୍ଡକୁ । ବାଟରେ ତଥାପି ମୋ ନଦେଖିବାରେ ଦି' ଚାରି ଟୋପା ପଡ଼ିଯାଇଥିଲା

କେମିତି । ଗାଧୋଇଆସି ମା' ଯେମିତି ତା ଆଖିରେ ପଡ଼ିଛି– ନିଆଁବାଣ ହୋଇଗଲା । ଆଉ ମା'କୁ ସମାଳେ କିଏ ! ତାର ପୂଜାଫୁଜା ସବୁ ତୁଲିକି ଗଲା । ସେ ବଡ଼ାଟା ଆଣି, ଦେଖି, ରାଗରେ କଡ଼କଡ଼ ହେଇଗଲା । ମୁଁ ଦାଣ୍ଡରେ ଥାଇ କବାଟ ଫାଙ୍କରେ ଚାହିଁଥାଏଁ– 'କୁଆଡ଼େ ଗଲା ସେ ଟୋକା– ଏତକ ଆଉ ରଖିଲୁ କିଆଁ ? ନେ– ସବୁ ଖା–ଖାଇ ମର୍ ।' କହି ସେ ବଡ଼ାଟାକୁ ଟେକି କଚାଡ଼ିଦେଲା । ବଡ଼ାଟା ଭାଙ୍ଗି ଚୂନ୍‌ଭୂତ୍ ହୋଇଗଲା । ଦହିଗୁଡ଼ାକ ସବୁ ଛିନ୍‌ଛତର ହୋଇ ପଡ଼ିଲା । ମୁଁ ବି ଖାଇଲି ନାହିଁ କି ବାପା ବି ଖାଇଲେନାହିଁ । ମୋତେ କିନ୍ତୁ କଥାଟା ବଡ଼ ବାଧିଲା । ମା' ରାଗେ । ମୋ ମା' ମୋତେ ଏମିତି ଟକଳାଗିରି କଲେ ମାରେ । ଏ ମା' ମୋତେ ମାରିଲାନାହିଁ । କିନ୍ତୁ ଏ ମାଡ଼ଟା ଯେମିତି ମୋତେ ଢେର୍ ବେଶି ଜୋର୍‌ରେ କାଟିଲା ।

ସେଦିନ ମୁଁ ଚୋରି କରୁଥିଲି । କିନ୍ତୁ ସେ ଚୋରିରେ ମା'ର ଘରକରଣା ଉଜୁଡ଼ି ଯାଉନଥିଲା । ତା' ଘର ଯେମିତି ଦିନକୁ ଦିନ ଭରିଉଠୁଥିଲା । ସେ ମାରେ, ଗାଳିଦିଏ । ମୁଁ କାନ୍ଦେ– ରାଗେଁ, ତାପରେ ଯେତେବେଳେ ସେ ମତେ କୋଳକୁ ଯାକିନିଏ ମୋତେ ଲାଗେ ମୋର ସବୁକଥା ଯେମିତି ହଜିଗଲା । ତା' ମୁହଁକୁ ଚାହିଁ ମୁଁ ଦେଖେଁ– ତାର ଯେମିତି କିଛି ଯାଇନାହିଁ– ତା' ଦୁଧ ଦହି ଯେମିତି ସେମିତି ଅଛି– କି ଆହୁରି ବେଶି ହେଇଯାଇଛି ।

ଏ ମା' ଏଣିକି ଦୁଧଦହି ରଖି ଚାବିଦିଏ । ଯେତେ ଖାଏ ପଛେ ମୋ ମା' ମୋତେ ଚାବି ଦଉନଥିଲା । ମୋତେ କହେ– ତୋରିପାଇଁ ତ ରଖିଥିଲି– ବଳେ ଦେଇଥାଆନ୍ତି – ନୁଚେଇ ଖାଇଲୁ କାହିଁକି ? ଚୋରି କରିବାଟା ଭଲନୁହେଁ– ଛି– ! କିନ୍ତୁ ସେ ଚୋରିଟା ମୋତେ ଭଲଲାଗୁଥିଲା । ଆଜି ମୁଁ ଚୋରିକରେନାହିଁ– ଦୁଧ ଦହି ଲୁଚେଇ ଖାଏ ନାହିଁ– ଖାଇବାର ବାଟ ନାହିଁ । ବାଟ ଥିଲେ ବି ଖାଆନ୍ତିନାହିଁ । ହେଲେ ବି ଏ ସାଧୁତା, ଏ ଭଲପିଲା ହେବାଟା ମୋତେ ଭଲଲାଗେନାହିଁ । ଏ ସତପଣିଆ, ସଚୋଟଗିରିରେ ମୋତେ କଷ୍ଟ ହୁଏ । ମୋ ଆତ୍ମା କାନ୍ଦେ । ମୋତେ ମନେହୁଏ, ଏଇଟାଇ ଯେମିତି ସବୁଠୁଁ ବଡ଼ ଚୋରି– ମନର ଚୋରି– ବଡ଼ ପାପ । ଆଉ ସେ ଚୋରିରେ ନିଜର ଜିନିଷକୁ ସେମିତି ଲୁଚାଇ ଖାଇବାରେ, ନିଜ ସାଙ୍ଗରେ ଗେଲ ହେବାର ଯେଉଁ ମିଠା ଆସ୍ୱାଦ ମିଳେ, ସେଇଟା ସାଧୁ ଆତ୍ମାର ଯେମିତି ପ୍ରକୃତ ପ୍ରବୃତ୍ତି ।

ମୋ ମା' ଥିଲାବେଳେ ବାପା ପଚାରନ୍ତି– ଭିକାରି ଖାଇଛି ?

ମା' କହେ– ହଁ, ଖାଇଛି ।

ତଥାପି ବାପା ଡାକନ୍ତି ସାଙ୍ଗରେ ଖାଇବାକୁ ।

ସେଦିନ ବାପା ମୋତେ ସେଇମିତି ଡାକିଲେ । ମୁଁ ଯାଇଁ ବସିଲି ।

ମା' କହିଲା– ଏଡ଼େ ଚାଣ୍ଡେ ଝଡ଼େଇଦେଇ ଆସିଲୁଣି ନା ?

ତାପରଠୁଁ ଆଉ ବାପା ଡାକନ୍ତିନାହିଁ । ମା'ର ସେତେବେଳକୁ ମୁହଁ ଦେଖି ମୁଁ ତ ଡରିଯାଇଥିଲି । ମନେହେଲା ବାପା ବି ଯେମିତି ଡରିଗଲେ ।

ଦେଖିଲି କ୍ରମେ କ୍ରମେ ମୁଁ ଘରଠାରୁ ଅଲଗା ହେଇଯାଉଛି । ସେତେବେଳେ ମୁଁ ଏକୁଟିଆ । ମୋତେ ସମାଳିବା ଭଳିଆ ଲୋକ କେହି ନଥିଲେ– ମୁଁ ପାଇଲିନାହିଁ । ପଛକୁ ଚାହିଁ ଦେଖେଁ, ଘର ମୋଠୁଁ ଅନେକ ଦୂରରେ । ବାପା ଦିଶନ୍ତି– ନୂଆ ମା' ଦିଶେ । ମୁଁ ଅନେଇ ପୁଣି ମୁହଁ ଫେରେଇନିଏଁ । ସେମାନେ ମୋତେ କିଛି କହନ୍ତିନାହିଁ । କୁଆଡ଼େ ଯାଉଛି ବୋଲି ପଚାରନ୍ତିନାହିଁ । ମୁଁ ମୋ ବାଟରେ ଚାଲିଥାଏଁ । ଖୁବ୍ ଦୂରକୁ ଏକମୁହଁ ଚାଲିଥାଏଁ । କେତେବେଳେ କିମିତି ପଛକୁ ଚାହେଁ । ଘର ଯେମିତି ଆସ୍ତେ ଆସ୍ତେ ଛୋଟ ହେଇଯାଉଛି । ଆଉ ଦଣ୍ଡକେ ଘର ଏକାବେଳକେ ଲୁଚିଯିବ– ମୋତେ ଦିଶିବନାହିଁ ।

X X X X

ବାପା କହନ୍ତି– ମୂଲିଆଙ୍କ ସାଙ୍ଗରେ ବିଲକୁ ଯା ।

ମା' କହେ– ଏଡ଼େ ଟୋକାଟା ହେଲୁ, କାମଧନ୍ଦା କର । ଖାଲି ବସି ବସି ଖାଇ ତୋର ହଜମ ହଉଛି କିମିତି ଲୋ ମା !

ମୋ ଗୋଡ଼ହାତ ଚଳେନାହିଁ– ମୋ ପ୍ରାଣ ଡାକେନାହିଁ । ମୁଁ ଘରୁ ପଳେଇଯାଇଁ ବସେଁ ଆଖଡ଼ାଘରେ । ଗୀତ ଗାଏ– ବାଜା ଶିଖେ । କେତେବେଳେ ମାଇନର ଇସ୍କୁଲ୍‌କୁ ଯାଇଁ ଲାଇବ୍ରେରୀରୁ ବହି ଆଣି ପଢ଼େ ।

ଗାଁର ମୁରବି ମୁଖିଆ ଲୋକେ ବି ମୋତେ ସେଇକଥା କହିଲେ– ତୁ ଘରକଥା କିଛି ବୁଝୁନାହୁଁ କାହିଁକି ?

ମୁଁ କିଛି କହେ ନାହିଁ । ମନକୁ ପଚାରେଁ– ମୁଁ ଘରକଥା କାହିଁକି ବୁଝୁନାହିଁ ? ମନକହେ, ବିବେକ କହେ, ନ୍ୟାୟ ଅନ୍ୟାୟର ଧାରଣା କହେ– ତୁ ଇଚ୍ଛାକରି ବୁଝୁନାହୁଁ ।

କିଏ ଏଇ ପ୍ରାଣଟା– ଏଇ ହୃଦୟଟା– ଏଇ ଛାତିଭିତରଟା କିନ୍ତୁ କହେ– ତୁ ବୁଝିବୁ କିମିତି ?– ତୁ ବୁଝିପାରିବୁନାହିଁ– ବୁଝିବା ତୋର ଉଚିତ ନୁହେଁ ।

ବାପା ହଳକୁ ଯାଆନ୍ତି– ମୂଲ ବି ଲାଗନ୍ତି । ପଇସା ଆଣି ମା'କୁ ଦିଅନ୍ତି । ମୁଁ ଜାଣେନାହିଁ ।

ଧାନ କେତେ ଅମଳ ହେଲା, କେତେ କରଜ ଶୁଝାହେଲା– କେତେ ରହିଲା, କେତେ ଗଲା – ମୋତେ କେହି ବୁଝାନ୍ତି ନାହିଁ ।

ନୂଆ ଜମି କିଣାଗଲା– କାହାଠୁଁ କିଣାଗଲା– କିମିତିକା ଜମି କିଣାହେଲା– କେଉଁଠିକା ଜମି କିଣାଗଲା– ଜମି କେମିତି କିଣାଗଲା– ପଇସା କେଉଁଠୁ ଆସିଲା– ମାମୁଁଘର ପଇସା ସେଥିରେ କେତେ ଅଛି– ସେ ଜମି କା' ନାଁରେ କିଣାଗଲା– ଲୋକେ ଯେ କହୁଛନ୍ତି, ବାପା ନାଁରେ କିଣାନଯାଇ ମା' ନାଁରେ କାହିଁକି କିଣାଗଲା– ଏସବୁ ମୋତେ ଘରେ କେହି କିଛି କହନ୍ତିନାହିଁ– ପଚାରନ୍ତିନାହିଁ ।

ଘର କେମିତି ଛୁଆଁଯିବ– ଘର କେଉଁଆଡ଼କୁ ବଢ଼ିବ– ଘରର କେଉଁ କାନ୍ଥ ରହିଗଲାଣି– ସେସବୁ ମୋର ଜାଣିବା ଦରକାର ପଡ଼େ ନାହିଁ ।

ଲୁଗାପଟା, ଲୁଣ ହଳଦୀ, ହାଣ୍ଡି ଜିରା ସବୁକଥା – ମୁଁ କିଛି ବୁଝେ ନାହିଁ ।

କାହିଁକି ବୁଝିବି ? ଘରେ ମୋର କି ଅଧିକାର ଅଛି ? ମୋତେ ଯିଏ ଜନ୍ମ ଦେଇଛି– ମୋର ଯିଏ ବାପ, ତା' ଉପରେ ତ ଅଧିକାର ନାହିଁ ମୋର– ଆଉ ଏ ଘର, ଏ କାନ୍ଥବାଡ଼, ଏଇ ନିର୍ଜୀବ ଜିନିଷ ଉପରେ କେଉଁ ଅଧିକାର ଲୋଭରେ ମମତା ଆସିବ ମୋର ?

ଘରୁ ଛାଟିପିଟି ହୋଇ ବାହାରି ଆସିବାକୁ ମନହେଲା ! କିନ୍ତୁ କେଉଁଠିକୁ ଯିବି ? ହାତଗୋଡ଼ ବାନ୍ଧି ହୋଇଥିଲାପରି ମୋର ଯିବାକୁ ଇଚ୍ଛାଥିଲେ ବି ମୁଁ ନିଜକୁ ଛାଡ଼୍ କରିପାରୁନାହିଁ ।

ଯାତ୍ରାଦଳ ସାଙ୍ଗରେ ଯେତେଦିନ ବାହାରେ ଥାଏଁ– ଦିନଟା ବେଶ୍ କଟିଯାଏ । ପୁଣି ଗାଁ ମାଡ଼ିଲେ ମୋର ଯେମିତି କ'ଣ ହେଇଯାଏ ! ଘରେ ଗୋଡ଼ଦେଲାକ୍ଷଣି ମୋର ମନେହୁଏ, ସତେ କି ମଇଳା ରଣଭଣ ଗୋଟାଏ ନିହାତି କଦର୍ଯ୍ୟ, ଅପରିଷ୍କାର, ଅନ୍ଧାରୁଆ, ଅସନା ଜାଗା ଭିତରେ ପଶୁଛି ମୁଁ ! ଆଉ ଏ ଘରର କାନ୍ଥବାଡ଼ଗୁଡ଼ାକ ବି ମୋ ଉପରେ ପଡ଼ିଯିବେ କି ଆଉ !

ମା'କୁ ଚାହେଁ । ଏଇ ମା'କୁ ନେଇ ମୁଁ କ'ଣ ସତେ ଏଇ ବିଝୁଡ଼ା ଜିନିଷଗୁଡ଼ାକ ସଜାଡ଼ି ନେଇପାରିବି ? ମନେହୁଏ, ମା' ଯେମିତି ଗୋଟାଏ ଆଗ୍ନେୟଗିରି । ମୋତେ ଡରମାଡ଼େ ।

ବାପାଙ୍କୁ ଚାହେଁ । ଏ ବାପାଙ୍କୁ କ'ଣ ମୁଁ ପୁଣିଥରେ ସେଇ ବାପା କରିପାରିବି ? ଭରସା ହୁଏନାହିଁ । ସେ ଯେମିତି ଭାରି ଦୁର୍ବଳ !

ନା, ମୋତେ ଯିବାକୁ ହେବ– ଏ ଘର ଛାଡ଼ିବାକୁ ହେବ– ବାପା ଥାଉ, ମା' ଥାଉ, ଯେ ଥାଉ– ଯେଉଁଠି ମୋର ଆତ୍ମା ନଟେକୁଛି– ଯେଉଁଠି ଆତ୍ମା ଦୁଃଖରେ କଷ୍ଟରେ ଚିତ୍କାର କରିଉଠୁଛି– ସେ ସ୍ୱର୍ଗହେଲେ ବି ମୁଁ ସେଠି ରହିପାରିବିନାହିଁ ।

ଯଦି ବଞ୍ଚିବାକୁ ହେବ, ଜୀବନ ଯଦି ବଞ୍ଚିବାକୁ ଚାହୁଁଛି– ମୁଁ ତାକୁ ବଞ୍ଚିବାକୁ ଦେବି– ସେହି ଜୀବନର ମୂଲ୍ୟରେ ।

ହାଡ଼, ମାଂସ, ରକ୍ତ ଟିକି ଟିକି କରି ତରଳାଇ ମୁଁ ଜୀବନକୁ ଆହାର ଯୋଗାଇ ପାରେଁ– କିନ୍ତୁ କାହାରି ଆଦେଶରେ ନୁହେଁ– କାହାରି ଜୋର୍ ଜବରଦସ୍ତିରେ ମୁଁ ତା' ପାରିବିନାହିଁ ।

ମା' ପ୍ରତି କର୍ତ୍ତବ୍ୟରେ ତ୍ରୁଟିହେବ, ହଁ, ଯେତେହେଲେ ମା'– ବାପାଙ୍କର ବିବାହିତା ସ୍ତ୍ରୀ । ମୋର ନିଶ୍ଚୟ କର୍ତ୍ତବ୍ୟ ଅଛି । କିନ୍ତୁ ମୋର କର୍ତ୍ତବ୍ୟ କରିବାରେ ଯଦି ତା'ର ପ୍ରାଣ, ତା'ର ଅନ୍ତରାତ୍ମା ପୂର୍ଣ୍ଣ ନହେବ, କେବଳ ତା'ର ଗୋଟାଏ ସ୍ୱାର୍ଥର ପ୍ରାର୍ଥନାକୁ ଇନ୍ଧନ ଯୋଗାଇ ମୋର ତ୍ୟାଗର ମହତ୍ତ୍ୱ, କର୍ତ୍ତବ୍ୟର ମର୍ଯ୍ୟାଦାକୁ ନଷ୍ଟ କରିବି କାହିଁକି ?

ଆଉ ବାପା ! ସେ ଅପାତ୍ର– ଦାନର ଅଯୋଗ୍ୟ ।

X X X X

ସେଇ ଲୋକ ମୁଁ, ଯେ କି ହୃଦୟର ଗୋଟାଏ ଭାବପ୍ରବଣତାରେ ଘରଦ୍ୱାର ଛାଡ଼ି ଚାଲିଯାଆସିଲି, ନିଜର କଷ୍ଟଯାକ ଭୁଲିଯିବାପାଇଁ ନୁହେଁ, ପ୍ରାଣର ପସରାଟାକୁ ଏକା ଏକା ଏକାନ୍ତରେ, ବିଶ୍ୱସ୍ତଭାବରେ ଭୋଗକରିବାପାଇଁ– ମୁଁ ସେଇ ଲୋକ ।

ମୋତେ ପ୍ରଥମେ ସେଠି ଅନ୍ତତଃ ଏତିକି ଭଲଲାଗୁଥିଲା— ସେଠି ମୋତେ କେହି ମୋର ଦୁଃଖ ହରିନେବେବୋଲି କହି ପ୍ରତାରଣା କରିନଥିଲେ । ସେମାନଙ୍କର ମୋ ସହିତ ପ୍ରତ୍ୟେକ ବ୍ୟବହାର କାରବାରରେ ସେମାନେ ଯେମିତି ସ୍ପଷ୍ଟ ମୋତେ କହିଦିଅନ୍ତି ତୋ ଦୁଃଖ ତୋର, ଆମ ଦୁଃଖ ଆମର । ଦୟା ଦେଖାଇ ତୋତେ ରଖିଛୁଁ, ଯେଉଁଦିନ ତୁ ଦୟାର ଅଯୋଗ୍ୟ ହୋଇଯିବୁ, ସେଦିନ ତୁ ତୋ ବାଟ ଦେଖିବୁ ।

କିନ୍ତୁ ସେମାନେ ତାଠୁଁ ମୋର ଢେର୍ ବେଶି କରିଛନ୍ତି । ମୁଁ ତାଙ୍କଠୁଁ ଯାହା ଆଶା କରିଥିଲି, ସେ ତାଠୁଁ ମୋତେ ଅନେକ ଅଧିକା ଦେଇଛନ୍ତି । ମୁଁ ସେଥିପାଇଁ କୃତଜ୍ଞ ।

କିନ୍ତୁ ସେ ଅବସ୍ଥା ବଦଳିଗଲା । ଆଉ ସେ ଖୋଲା ଖୋଲା କଥା ନାହିଁ । ମୁଁ ଦୋଷକଲି, ଅନ୍ୟାୟକଲି, ସେଥିପାଇଁ ମୋ ମୁହଁରେ କେହି କିଛି କହେନାହିଁ । ମୋର ପଛଆଡ଼େ ଷଡ଼ଯନ୍ତ୍ର ଚାଲେ । ଗୋଟାଏ ବାହାରର ଲୋକ ମୁଁ— ଯେଉଁ ମୁହୂର୍ତ୍ତରେ ଇଚ୍ଛା କରିବେ, ସେଇ ମୁହୂର୍ତ୍ତରେ କାଢ଼ିଦେଇପାରିବେ । କିନ୍ତୁ ସେ ସାହସ ତାଙ୍କର ନାହିଁ । ମୁଁ ଯଦି ଅନ୍ୟାୟ କରିଥାଏଁ— ଚପଳାଙ୍କୁ ଭଲପାଇ ଯଦି ମୋର ନୈତିକ ଅବନତି ଘଟିଥାଏ, ତେବେ ମୁଁ ବୁଝିବି ଯେ ସେମାନେ ମୋଠାରୁ ଆହୁରି ପତିତ— ଆହୁରି ଅବନତ— ସେମାନଙ୍କର ନୈତିକ ମେରୁଦଣ୍ଡ ମଧ୍ୟ ନାହିଁ ।

ତା'ହେଲେ ବି ମୋର ଏ ସ୍ଥାନ ଛାଡ଼ି ଚାଲିଯିବା ଉଚିତ । ଏଇ ଲୁଚାଛପା, ଏଇ କପଟତା ମୋର ସବୁଠାରୁ ବଡ଼ ଶତ୍ରୁ । ମୁଁ ବଡ଼ ବେଶି ଅନୁଭବ କରେଁ, ଏଇ ଛକାପଞ୍ଝାରେ ଯେମିତି ହୃଦୟର ଅବମାନନା ହୁଏ— ପ୍ରାଣକୁ ପ୍ରତାରଣା କରାଯାଏ ।

ତଥାପି ମୁଁ ରହିଥିଲି । କାହିଁକି ? ଏତେଗୁଡ଼ାଏ ମିଥ୍ୟା ପ୍ରବଞ୍ଚନା ଭିତରେ ମୁଁ ଗୋଟିଏ ସତ୍ୟ ପାଇଥିଲି ବୋଲି ।

ସେ ସତ୍ୟରୁ ମୁଁ ଯେଉଁ ଆନନ୍ଦ ପାଇଥିଲି, ସେଟା ମୋର ସେ ଜଖମ ଜାଗାକୁ ଅବହେଳା କରି ଆଉ ଗୋଟାଏ ଜାଗାରେ ବଡ଼ କୋମଳ, ଅତି ନରମ ଆଉଁସା ଦେଇ, ଆଗ ବଥାଟାକୁ ଭୁଲାଇଦେବା ଲାଗି ବିଶ୍ୱସ୍ତ ଆଉ ପ୍ରକାଶ୍ୟ ଚେଷ୍ଟା କରୁଥିଲା । ସେଥିପାଇଁ ସେଦିନ ମୁଁ ଜରା ଆତୁରରେ ଚପଳାଙ୍କୁ ଡାକିପକାଇଥିଲି— ମା !

କିନ୍ତୁ ମନରେ ମୋର ବେଳେ ବେଳେ ଡର ହୁଏ, ମା'ର ସ୍ନେହଭଳି ଏ ସୁଖଟା ବି ଦିନେ ସେମିତି ଆଘାତ ଦେବନାହିଁ ତ !

X X X X

ବିଭୂତିବାବୁଙ୍କର ସ୍ତ୍ରୀ ପ୍ରସବ କଲେ ।

ସନ୍ତାନ, ପ୍ରସୂତି ଉଭୟେ ମାରା ପଡ଼ିଲେ ।

X X X X

ମନେହେଲା, ଘର ଭିତରେ ବିଭୂତିବାବୁ ହେଇଗଲେ ଏକା । ମୋର ଟିକିଏ ଦୟା ହେଲା ତାଙ୍କୁ । ମୋ ପ୍ରତି ତାଙ୍କର ନିଷ୍ଠୁର ବ୍ୟବହାର ମୁଁ ପ୍ରକୃତରେ ଭୁଲିଗଲି । ମନର ଉତ୍ତେଜନାରେ କେତେବେଳେ ସେ କ'ଣ କେଉଁଠି କହିଥିଲେ ବା କରିଥିଲେ ବୋଲି ମୁଁ ସେଇଟାକୁ ଗୋଟାଏ ଗଣ୍ଠି ପକେଇ ବସିବି ନା ?

ମନେହେଲା, ବିଭୂତିବାବୁ ଆଜିକି ଦୁଇବର୍ଷ ତଳେ ଯାହା ଥିଲେ, ତା' ନାହାନ୍ତି । ଯେମିତି ଅନେକ ଦିନ ବିଦେଶରେ ରହି ଫେରିଆସିଛନ୍ତି ଘରକୁ । ସେଇ ବିଭୂତିବାବୁ ବୋଲି ଚିହ୍ନିହେଉନାହିଁ ହଠାତ୍; କିନ୍ତୁ ଭଲକରି ଦେଖିଲେ ଜଣାଯାଉଛି, ବିଭୂତିବାବୁ ଛଡ଼ା ଆଉ ସେ କେହି ନୁହେଁ । ମାତ୍ର ଢେର୍ ବଦଳିଯାଇଛନ୍ତି । ଯେମିତି ପିଲା ଥିଲେ– ବଡ଼ ହେଇଯାଇଛନ୍ତି; ହାଲୁକା ଥିଲେ–ଭାରି ହେଇଯାଇଛନ୍ତି । ଅଲଗା– ଏକାବେଳକେ ଅଲଗା ଢଙ୍ଗ ।

ସେ ଗମ୍ଭୀର ହେଇଯାଇଛନ୍ତି । ସବୁବେଳେ ଯେମିତି କ'ଣ ଭାବୁଛନ୍ତି । ଆଉ ସେଇଟା ତାଙ୍କୁ ଯେମିତି ସୁନ୍ଦର କରିପକେଇଛି ଆଗଠୁଁ ବେଶି ।

ଚପଳା ତାଙ୍କୁ ଅନେକ ସମୟରେ ଚାହିଁରହନ୍ତି । ଭାବିଲି, ସ୍ୱାଭାବିକ । ଏଡ଼େ ବଡ଼ ବିପଦ ପରେ ଦୟା ହେଉଥିବ– ହେବା କଥା । ଚପଳା ମୋ ସାଙ୍ଗରେ କଥାବାର୍ତ୍ତା କଲାବେଳେ କହନ୍ତି– ବିଭୂତି କ'ଣ ହେଇଗଲେଣି ଦେଖୁଛ ନା ? ମୁଁ ଭାବେ– ଏ ସହାନୁଭୂତି ମଧ୍ୟ ସ୍ୱାଭାବିକ ।

ଚପଳା ଆଉ ମୁଁ କଥାବାର୍ତ୍ତା ହେଉଥିବାବେଳେ ଚପଳା ଅନ୍ୟମନସ୍କ ହେଇଯାଇ କ'ଣ ଭାବନ୍ତି । ମୁଁ ଟିକିଏ ଆଶ୍ଚର୍ଯ୍ୟ ହୁଏଁ ।

ଚପଳା ଏଣିକି କ୍ରମେ ବିଭୂତିଙ୍କ ଖିଆପିଆ, ବସାଉଠା ପ୍ରତି ନିଘା କରନ୍ତି । ମନେକଲି, ଏଟା ମାନବିକତା – ସେ ନକଲେ ଆଉ କିଏ କରିବ ?

ଚପଳାଙ୍କର ମୋ ପ୍ରତି ଟିକିଏ ଅବହେଳା ହେଲା । ଭାବିଲି– ମୁଁ ଭାବିଲିନାହିଁ– ଦୁଃଖୀ ହୃଦୟ ମୋର କହିଲା ଯେ, ଚପଳା ମୋର ହୋଇଯାଇ ବିଭୂତିଙ୍କ ଦୁଃଖରେ ଟିକିଏ 'ଆହା' କରୁଛନ୍ତି ।

କିନ୍ତୁ ଡର ହେଲା ଚପଳା ଯଦି ମୋ ଦୁଃଖ ଭୁଲିଯାନ୍ତି । ହୃଦୟ ତାର ଜବାବ୍ ଦେଲା– ଚପଳା ତୋତେ ଭୁଲିପାରନ୍ତିନାହିଁ । ଚପଳା ତୋର । ଚପଳାକୁ ତୋଠାରୁ କେହି ଛଡ଼ାଇ ନେଇପାରିବନାହିଁ । ଚପଳା ତୋ ହୃଦୟ ସାଙ୍ଗରେ ଜଡ଼ିତ ।

କିନ୍ତୁ ଚପଳା ଯଦି ନିଜେ ନିଜେ ଚାଲିଯାନ୍ତି ?

ତୋ ହୃଦୟକୁ ବି ନେଇ ଚାଲିଯିବେ – ତୋର ଆଉ ଦୁଃଖ କ'ଣ ?

ଭାବିଲି ସତ ତ ! ଏହି ହୃଦୟଟାପାଇଁ ସିନା ଏଡ଼େ ଯନ୍ତ୍ରଣା ! ହୃଦୟ ଚାଲିଗଲେ ଆଉ ଯନ୍ତ୍ରଣାର ଆଘାତ ଲାଗିବ କେଉଁଠି ?

ଚପଳା ଅନେକ ସମୟଧରି ବିଭୂତି ସାଙ୍ଗରେ ବସି ଗପକରନ୍ତି । ମନେକଲି– ବିଭୂତିର ମନ ବଦଳାଇବାପାଇଁ ଚପଳା ଯାହା କରୁଛନ୍ତି, ଭଲ ।

ଏଇମିତି ଅକାରଣରେ ମୋର ଚିନ୍ତାଟା ବଢ଼ିଗଲା । ମୁଁ ଯେ କ'ଣ ଚିନ୍ତା କରେଁ, ମୁଁ ତା ନିଜେ ଜାଣିପାରେନାହିଁ । ତେବେ ଯେତେବେଳେ ମୁଁ ଭାବେଁ, ମୁଁ କ'ଣ ଚପଳାଙ୍କୁ ସନ୍ଦେହ କରୁଛି କି ? ସେତେବେଳେ ମୋତେ ହସ ମାଡ଼େ ।

ଛି ! ଚପଳାଙ୍କୁ ମୋର ସନ୍ଦେହ କରିବା ଉଚିତ ନୁହେଁ । ଏହି କଥା ଭାବୁଁ ଭାବୁଁ, ମୁଁ ହଠାତ୍ ଦିନେ ବୁଝିପାରିଲି, ମୁଁ ପ୍ରକୃତରେ ଚପଳାଙ୍କୁ ସନ୍ଦେହ କରୁଛି । ମୁଁ ଡରରେ ଥରି ଉଠିଲି ।

ଆଜି ମୁଁ ମନକୁ ପଚାରିଲି— ଚପଳାଙ୍କୁ ସନ୍ଦେହ କରିବାର ଅଧିକାର ମୋର ଅଛି ତ ?

ମୁଁ ଯେତେବେଳେ ଘର ଛାଡ଼ି ଆସି ସେଠି ରହିଲି, ସେତେବେଳେ ଚପଳା ନ ଥିଲେ । ଚପଳାଙ୍କ ପାଇଁ ମୁଁ ସେଠିକି ଆସିନଥିଲି । ଚପଳାଙ୍କ ଦୟାରୁ ମୁଁ ରହିଁନଥିଲି । କିନ୍ତୁ ଚପଳାଙ୍କ ଦୟାରୁ ମୁଁ ରହିପାରିଛି । ପୁଣି ଚପଳାଙ୍କୁ ଛାଡ଼ି ମୁଁ ସେଠି ରହିପାରନ୍ତି ତ ? ଚପଳାଙ୍କୁ ଛାଡ଼ି ମୁଁ ଆଉ କେଉଁଠି ହେଲେ ରହିପାରିବି ତ ?

ଚେଷ୍ଟାକଲି ଦେଖିବାପାଇଁ— ଚପଳାଙ୍କୁ ଛାଡ଼ି ମୁଁ କେତେ ସମୟ ଅଲଗା ରହିପାରୁଛି ।

ମୁଁ ଘରୁ ଚାଲିଆସିଥିଲି ବୋଲି ଯେ ଘରକୁ ନଯାଏଁ ତା' ନୁହେଁ । ମଝିରେ ମଝିରେ କେତେବେଳେ କେମିତି ଘରକୁ ଯାଏଁ । କିନ୍ତୁ ଚପଳାଙ୍କୁ ଛାଡ଼ି ମୁଁ ରହିପାରେନାହିଁ ଘରେ । ଘରକଥା ଛାଡ଼ି ଯଦି ସ୍ୱର୍ଗକୁ ଯିବାକଥା ବି ହୁଏ, ତେବେ ମୁଁ ବୋଧେ ଚପଳାଙ୍କୁ ରଖି ସେଠିକି ବି ଯାଇପାରନ୍ତିନାହିଁ । ଯେଉଁଠି ଥାଏଁ ଚପଳାଙ୍କ କଥା ମନେପଡ଼ିବାକ୍ଷଣି ମନ ଉଚ୍ଛନ୍ନ ହୁଏ, ତାଙ୍କୁ ଦେଖିବାପାଇଁ ଉଦ୍‌ବିଗ୍ନ ହୁଏ । ପଳାଇଆସେଁ । ବାଟଯାକ ଭାବୁଥାଏଁ, ମୁଁ ଗଲାବେଳକୁ ଚପଳା କ'ଣ କରୁଥିବେ ? ଏତେ ଦିନ ରହିଗଲି— ସେ ବଡ଼ ବ୍ୟସ୍ତ ହେଉଥିବେ । ମୁଁ ଗଲା କ୍ଷଣି ହସିଉଠିବେ— ଚମକିପଡ଼ି ଚାହିଁଦେବେ । ସ୍ୱଚ୍ଛ ସରୋବରରେ ଚନ୍ଦ୍ର କିରଣ ପଡ଼ିଲା ପରି ତାଙ୍କର ରୂପଯୌବନ ଝଲିଉଠିବ !

କିନ୍ତୁ ସେ ଯଦି ଅଭିମାନ କରିଥିବେ ?

ମୁଁ ଅପା ବୋଲି ଡାକିଦେଲେ ସବୁ ଭାସିଯିବ । ସେ ଆହୁରି ସୁନ୍ଦର— ସୁନା ତରଳି ଗଲା ପରି ଆହୁରି ମନୋରମ ଦିଶିବେ ।

ଏଇ ଇତିହାସ ପ୍ରକୃତରେ କେତେ ଥର ପୁନରାବୃତ୍ତ ହୋଇଛି ।

କିନ୍ତୁ ସେଥର ମୁଁ ଘରକୁ ଯାଇ ଇଚ୍ଛାକରି, କଷ୍ଟକରି, ପରୀକ୍ଷା ସୂତ୍ରରେ ଦେଖିବାପାଇଁ— ଚପଳାଙ୍କୁ ଛାଡ଼ି ରହିପାରୁଛି କି ନାହିଁ— ଅନେକ ଦିନ— ମାନେ, ତିନି ଚାରିଦିନ ରହିଲି ।

ଆହୁରି ରହିଥାନ୍ତି । କିନ୍ତୁ ଘରର ପାଣିପାଗ ସୁଧୁରିନଥିଲା । ମା'ର ଖୁଣ୍ଟା ଶୁଣିବାକୁ ପଡୁଥିଲା— ବାପାଙ୍କର ଉଦାସୀନତା ଦେଖିବାକୁ ହେଉଥିଲା । ତଥାପି ମୁଁ ଘରକୁ ଯାଉଥିଲି । ଘରୁ ପଳେଇ ଆସିଛି ବୋଲି କାହାରି ଯେମିତି ଧାରଣାନହେଉ ।

ମୁଁ ସେମାନଙ୍କ କଥାରୁ, ଭାବ ଭଙ୍ଗୀରୁ, ବ୍ୟବହାରରୁ ବୁଝିଲି । ତାଙ୍କର ଦୁଃଖ—ଦୁଃଖ ନୁହେଁ, ହିଂସା ଯେ ମୁଁ ବଡ଼ଲୋକର ଆଶ୍ରାରେ ବଡ଼ଲୋକ ହୋଇ ରହିଛି— ବାପ ମା'ଙ୍କୁ ପଚାରୁନାହିଁ ।

କିନ୍ତୁ ତାଙ୍କର ଏ ଅଭିଯୋଗରେ ପ୍ରତିକାର କେମିତି କରନ୍ତି ? ମୁଁ ଦିନେ ବଡ଼ଲୋକର ଆଶ୍ରା ଧରିଥିଲି ସତ । କିନ୍ତୁ ଆଜି ତ ସେ ବଡ଼ଲୋକ ବୋଲି ମୁଁ ସେଠି ଆଶ୍ରା ନେଇ ରହିନାହିଁ, କି ମୁଁ ଗରିବ ବୋଲି ସେ ମୋତେ ଦୟାକରି ତାଙ୍କ ଆଶ୍ରୟରେ ରଖି ନାହାନ୍ତି । ମୁଁ ଗୋଟାଏ

ହୃଦୟର ଆଶ୍ରା ପାଇଥିଲି । ସେ ବାପ ନ ହେଉ, ମା ନ ହେଉ, ସେ କେହି ନ ହେଉ ମୋର, ସେ ମୋର ଯା' ପାରେ ତା' ହେଉ, ମୁଁ ସେ କଥା ଭାବିବି କାହିଁକି ? ମୋର ପିଠା ଖାଇବାର କଥା – ମୁଁ ପିଠା ଖାଇବାକୁ ପାଉଛି । ମୁଁ ଗୋଟାଏ ଜିନିଷ ହଜାଇଥିଲି, ତା ବଦଳରେ ତମେ ମୋତେ କେହି କିଛି ଟିକିଏ ଦେଇ ମନ ବହଲେଇବା ପାଇଁ ଚେଷ୍ଟା ବି କରିନାହଁ । ଆଜି ମୁଁ ଆପେ ଆପେ ଯାହା ଖୋଜି ପାଇଛି, ତାକୁ ତମରି ପାଇଁ, ତମରି କଥାରେ ଛାଡ଼ିବି କାହିଁକି ? ସେଠି ମୋତେ ଆନନ୍ଦ ମିଳୁଛି, ମୋତେ ଆରାମ ମିଳୁଛି,– ଅଚିନ୍ତାରେ ରହିବାକୁ, ଆପଣାକୁ ପାସୋରି ଯିବାକୁ ସେଠି ମୁଁ ଅବକାଶ ପାଉଛି । ମୁଁ ଦେଖୁଛି, ମୁଁ ନଇଁପଡ଼ିଲା ବେଳକୁ, ଭାଙ୍ଗି ପଡ଼ିବା ବେଳକୁ ମୋତେ ଜଣେ ଟେକିଧରି ଜଡ଼ାଇ ନେଉଛି ତା କୋଳରେ– ଥାନ ଦେଉଛି ତା ହୃଦୟର ଏତେ ପାଖରେ– ମୁଁ ତା଼ଠୁଁ ଅଲଗା ହେବି କେମିତି ? ତା'ର ନ ହୋଇ ତମର ହେବି କି ସ୍ୱାର୍ଥରେ, କେଉଁ ନ୍ୟାୟରେ ? ସେଇ ମୋର ସର୍ବସ୍ୱ– ସେ ମୋର ବାପା ବୋଉ ସମସ୍ତଙ୍କଠୁଁ ବଡ଼– ବାପା ଆଜି ମୋତେ ଦେଖିପାରନ୍ତିନି ବୋଲି ନୁହେଁ– ମା ଆଜି ମୋର ନାହିଁ ବୋଲି ନୁହେଁ– ସେ ଆଦର ବାପା ମାଆଙ୍କ ଆଦରଠାରୁ ଅଲଗା– ଆହୁରି ମଧୁର– ଏମିତି ଆଦର ମୁଁ ଜୀବନରେ ଆଉ କେଉଁଠୁ ପାଇନଥିଲି– ସେ ଆଦରକୁ ଆଦରିଯିବାରେ ଗୋଟାଏ ଆପଣାଭୁଲା-ଶୋକପାସୋରା ନିଶା ଥିଲା– ସଂସାରଟାକୁ ଗୋଟାଏ ନୂଆ ରଙ୍ଗରେ ରଙ୍ଗିନ୍ କରି ଦେଉଥିଲା– ସେ ସ୍ନେହ, ସେ ମାୟା, ସେ ମମତା ଖୁବ୍ ବଡ଼, ଅତି ବଡ଼– ମୋ ମା'ଠାରୁ ବି ବଡ଼ !

ମୁଁ ଯୁବକ, ମୁଁ ପୁରୁଷ, ମୁଁ ସୁନ୍ଦର ଆଉ ମୁଁ ଯେ ମୁଁ– ମୁଁ ଯେ ଗୋଟାଏ ମଣିଷ– ମୁଁ ଯେ ବଞ୍ଚିଛି – ମୁଁ ଏତେ ଦିନକେ ବୁଝିଲି ସେକଥା– ସେଇ ଆଦର ସ୍ନେହ ମୋତେ ଖଡ଼ି ଧରି ବୁଝେଇ ଦେଇଗଲା ଯେମିତି । ଆଉ ତା' ସଙ୍ଗେ ସଙ୍ଗେ ସେଇ ଆଦରକୁ, ସ୍ନେହକୁ ନେଇ ତାକୁ ଦୁନିଆରେ ସବୁଠୁଁ ବଡ଼ ମଣି ମୁଁ ନିଜକୁ ତା' ନିକଟରେ ଛୋଟକରି ଦେଖିବାରେ ଆନନ୍ଦ ପାଇଲି– ଆଉ ଗର୍ବ କରି ଶିଖିଲି ଯେ ତା'ରି ପାଇଁ ମୁଁ ଆଜି ଦୁନିଆରେ ସମସ୍ତଙ୍କଠୁଁ ବଡ଼– ସମସ୍ତଙ୍କଠୁଁ ସୁଖୀ ।

କିନ୍ତୁ ସେ ସୁଖକୁ ବାଣ୍ଟ କରିହେବନାହିଁ– ସେଥିରୁ ଭାଗ ଦେଇପାରିବିନାହିଁ– ସେ ଅଖଣ୍ଡ, ଏକ ।

ଏକଥା ବି ଶୁଣିଲି; ବାପା କହିଲେ– ମା' ବି କହିଲା– ମୋତେ ଦେଖେଇ କୁହାଗଲା, 'ପର ଲୋକ ଏତେ ନିଜର ହେଇଗଲେ– ଆଉ ଆପଣା ଲୋକ ହେଇଗଲେ ସାତ ପର ?'

କିନ୍ତୁ କାହିଁକି ? କଥାଟା ତ ମିଛ ନୁହେଁ । ମୁଁ ଏ ମା'କୁ ଆପଣାର ବୋଲି ନଭାବିଲି ନାହିଁ, ଏ ବାପାଙ୍କୁ ବି ଏଇ ମା' ପାଇଁ ପର କଲି– ଦୁଃଖ ନାହିଁ; କିନ୍ତୁ ମୋ୍ ମା'କୁ ମୁଁ ଭୁଲିଯାଉଛି କିମିତି ? ଏ ସ୍ନେହଟାକୁ ତା଼ଠୁଁ ବଡ଼ କରୁଛି କେଉଁ ଯୁକ୍ତିରେ ?

ନିଜର ଲୋକ ଆପଣାର ହେବା ଏଡ଼େ ସହଜ ଯେ, ପ୍ରକୃତରେ, ମଣିଷର କଷ୍ଟ କରି ଆନନ୍ଦ ଉଠାଇବାର ପ୍ରବୃତ୍ତି ସେଥିରେ ତୃପ୍ତ ହୁଏନାହିଁ । ପରଠାରୁ ଟିକିଏ ସୁଆଗ ପାଇଲେ– ଯେଉଁଠୁ ମିଳିବାର କଥା ନୁହେଁ, ସେଠୁ ଯଦି କଣିକାଏ ବି ମିଳିଗଲା, ତେବେ ସେଇଟା

କୋଟିନିଧି ପାଇଲା ପରି ଲାଗେ । ପରକୁ ଆପଣାର କରିବାରେ ଯେମିତି ସବୁଠୁଁ ବଡ଼ ଆନନ୍ଦ । ସେଇଥିପାଇଁ ଚପଳାଙ୍କର ସ୍ନେହକୁ ଏତେ ବଡ଼କରି ଟେକି ଧରିଛି । ସେ ଯେମିତି ପରିମାଣରେ, ମାଧୁର୍ଯ୍ୟରେ, ମହିମାରେ ସମସ୍ତଙ୍କ ସ୍ନେହକୁ ବଳିପଡ଼ିଛି ।

ଅନ୍ଧାରଟା ଯେମିତି ମଣିଷକୁ ଘେରି ରହେ, ଚପଳାଙ୍କର ସ୍ନେହଟା ମୋତେ ସେଇମିତି ଗ୍ରାସ କରିଥିଲା । ମୁଁ ମୋର ପ୍ରତି ଇନ୍ଦ୍ରିୟ ଦେଇ ତା ବୁଝିପାରୁଥିଲି । ତାଙ୍କ ପାଖରେ ଥିଲେ ଯାହା– ଦୂରରେ ଥିଲେ ବି ସେଇଆ । ଅନ୍ଧାର ଯେମିତି ମୋଠୁଁ ଭିନେ ହୋଇ ବି ମୋର ଏତେ ନିକଟରେ, ସେ ଯେମିତି ପର ହେଲେ ବି ମୋର ଅତି ଆପଣାର । ତାଙ୍କୁ ପର କହିଲେ ପାପ ହେବ ।

ଏଡ଼େ ବଡ଼ ଅନିଆଚାର ସହିବ ନାହିଁ–
ମା' କୁଆଡ଼େ କାହାପାଖରେ କହିଥିଲା ଏକଥା ।
ମୋ ପୁଅ ହେଇ ଯା କଲା–
ଏକଥା ବାପାଙ୍କ ମୁହଁରୁ ଶୁଣିଛନ୍ତି କେତେ ଲୋକ ।

କିନ୍ତୁ ମୁଁ କ'ଣ କଲି । ମୁଁ କି ପାପ କରିଛି ? କି ଅନ୍ୟାୟ କରୁଛି ? ବାପା ହୁଏତ ଭାବୁଥିବେ,– ଗୋଟାଏ ବିଧବା, ହୁଏତ ବୟସରେ ବଡ଼ ବି ହେଇଥିବ, ତା ସଙ୍ଗରେ ଏତେ ମିଳାମିଶା, ଏତେ ଘସାଘଷି, ଏତେ ଆଦର ଆବଦାରଟା ଠିକ୍‌ନୁହେଁ । ମୁଁ ଯୁବକ – ତାର ବି ବୟସ ଅଛି । ନିଆଁ ପାଖରେ ଘିଅ ନ ତରଳି ରହିପାରେନାହିଁ । ତେଣୁ ଚପଳାକୁ ଭଲପାଇବା ମାନେ ତାର ନିକଟରେ ରହିବା । ତାର ନିକଟରେ ରହିବା ଅର୍ଥ ତରଳିଯିବା । ଅତଏବ, ଚପଳାଙ୍କୁ ଭଲପାଇବା ଅନ୍ୟାୟ । ବିଶେଷତଃ ସେ ବିଧବା । ଭଲ ପାଇବାରେ, ଭଲପାଇବା ପାଇବାରେ ତାଙ୍କର ଅଧିକାର ନାହିଁ । ସ୍ୱାମୀ ସହିତରେ ତାଙ୍କର ଦେହଟାକୁ ସତୀକରି ଦାହ୍‌କରିବାପାଇଁ ରାଜ୍ୟର ଆଇନ ବାଧା ଦେଇପାରେ; କିନ୍ତୁ ସ୍ୱାମୀର ଶବସଂସ୍କାର ସଙ୍ଗେ ସଙ୍ଗେ ସ୍ତ୍ରୀ ତାର ହୃଦୟଟାକୁ ଯେପରି ଜାଳିପୋଡ଼ି ଭସ୍ମ କରିଦେଇ ଆସେ, ସେଥିପାଇଁ ସମାଜ ତାକୁ ବାଧ କରିବ । ତାର ସାମାନ୍ୟ ଅବଶେଷ– ଟିକିଏ ଶଳ ମଧ ଯଦି ରହିଥାଏ, ତେବେ ସେଇଟା ଘୋର ପାପ ।

ଏଇ ସମାଜ, ଏଇ ଧର୍ମ, ଏଇ ଧାରଣା, ଏ ବାପା ମା, ଗୁରୁଜନ ଏତେଦିନ ଶିଖେଇ ଆସିଛନ୍ତି– ନ୍ୟାୟ ଆଗରେ ହୃଦୟକୁ ବଳିଦେବାପାଇଁ । ଯିଏ ବଳି ଦେଇ ଆସିଛନ୍ତି, ସେମାନେ ବୀର– ତାଙ୍କର ସ୍ୱର୍ଗରେ ସ୍ଥାନ– ସେମାନେ ପ୍ରାତଃସ୍ମରଣୀୟ ।

କିନ୍ତୁ ଏକାନ୍ତ ନିରପେକ୍ଷ ହୋଇ ବିଚାର କଲେ, ଏହି ଯୁକ୍ତିଟା ମନୁଷ୍ୟତ୍ୱର ପରିଚୟ ଦିଏ କି ? ମଣିଷ କ'ଣ ପଶୁ ହେବାରେ ତାର ପୌରୁଷ ପ୍ରକାଶ ପାଏ ? ହୃଦୟର ନିବେଦନ ନିକଟରେ ନ୍ୟାୟ-ଅନ୍ୟାୟ, ଉଚିତ-ଅନୁଚିତ, ଧର୍ମ-ଅଧର୍ମ କଥା କ'ଣ ଉଠିପାରେ ?

ଏଇ ନ୍ୟାୟଟା କ'ଣ ? ମଣିଷର ହୃଦୟକୁ, ମଣିଷର ଦେବତ୍ୱକୁ ପୋଡ଼ିଦେବା ପାଇଁ କ'ଣ ନ୍ୟାୟର ସୃଷ୍ଟି ?

ମୁଁ ଚପଳାଙ୍କ ପାଖକୁ ଫେରିଗଲି । ମୁଁ ଚପଳାଙ୍କୁଇ ପଚାରି ଆଜି ବୁଝିବି– ପଚାରିବି ତାଙ୍କୁ 'ଚପଳା, ତମକୁ ଭଲପାଇବା କ'ଣ ମୋର ଅନ୍ୟାୟ– ମୋର ପାପ ?'

ଚାରିଦିନ ପରେ ମୁଁ ଘରୁ ଫେରିଲି । ଚପଳା ଶୋଇଥିଲେ । ରାତିରେ ଆଜି ଆଉ ତାଙ୍କୁ ଯାଇ ଏକଥା ପଚାରିବାକୁ ମନହେଲାନାହିଁ । ଏକଥା ଯେମିତି ମୁଁ ପଚାରିପାରନ୍ତିନାହିଁ । ମୁଁ ଚପଳାଙ୍କୁ ଉଠାଇଲି । ବେଶି ରାତି ହେଇନଥାଏ । ମୁଁ କେବଳ ତାଙ୍କୁ ଚାହିଁ ରହିଲି । ମୋର ଆଖି ଯୋଡ଼ାକ ଯେପରି ତାଙ୍କୁ ବଡ଼ ବ୍ୟାକୁଳ ହୋଇ ପଚାରୁଥାନ୍ତି– ଚପଳା, ସତେ କ'ଣ ତମକୁ ଏମିତି ଚାହିଁବା ଅନ୍ୟାୟ ?

କାଲି ସକାଳେ ବିଭୂତି ମଫସଲରୁ ଫେରିବେ । ସେ ସକାଳୁ ସରବତ୍ ପିଅନ୍ତି । ଚପଳା ଉଠିଯାଇ ମିଶ୍ରି ପାଣିରେ ପକାଇଲେ ।

ଚପଳାଙ୍କର ମନ କ'ଣ ? ଏ କଥାଟା କେମିତି ପଚାରିବି, ଆଉ ବାଟ ପାଇଲି ନାହିଁ । ଫେରିଆସି ଶୋଇଲି । ଅନେକରାତିଯାଏଁ ନିଦ ହେଲାନାହିଁ । ସେଇଟା ନପଚାରିବା ଯାଏଁ ଯେମିତି ଥୟ ଧରି ରହିପାରୁନଥିଲି ।

ସକାଳୁ ଉଠି, ନିତ୍ୟକର୍ମ ସାରି ମୁଁ ପୁଣି ଗଲି ଚପଳାଙ୍କ ପାଖକୁ । ଚପଳା ସରବତ୍ ଭାଙ୍ଗି ସଜାଡ଼ି ରଖୁଥିଲେ ।

ମୁଁ ସକାଳୁ ଦାନ୍ତ ଘଷିସାରି ବାସି ପେଜ ଖାଏ । ପେଜଟା ବଡ଼ ପୁଷ୍ଟିକାରକ ଜିନିଷ ବୋଲି କିଏ କହିଥିଲା । ଚପଳା ମୋପାଇଁ ପ୍ରତିଦିନ ପେଜ କରି ରଖିଥାନ୍ତି – ନିଜେ ଆଣି ମୋତେ ଦିଅନ୍ତି ।

ମୁଁ ଯାଇ ତାଙ୍କ ଆଗରେ ଠିଆହେଲି ଆଜି । ପେଜ ମାଗିବାକୁ ନୁହେଁ । ପେଜ କଥା ମୋର ମନେ ବି ନଥିଲା । ମୁଁ ଯାଇଥିଲି ପଚାରିବାକୁ– ନା– କିମିତି ପଚାରିବି, ସେଇକଥାଟା ବୁଝିବାକୁ ଯାଇଥିଲି ତାଙ୍କ ପାଖକୁ ।

ସରବତ୍ ଦେଖି ମୋର ପେଜ କଥା ମନେପଡ଼ିଲା । ସେ ମୋତେ ଯାଚିଲେ ନାହିଁ । ମୁଁ ବି ଆଉ ପଚାରିଲିନାହିଁ ସେକଥା । ମୁଁ ବେଶ୍ ବୁଝିପାରିଲି ଯେ ପେଜ ଆଜି ରଖା-ଯାଇନାହିଁ ।

ମୁଁ ଚାଲିଆସିଲି ।

ଚପଳା ମୋ ପ୍ରଶ୍ନର ଉତ୍ତର ଦେଇଥିଲେ । ସେ କହିପଠାଇଥିଲେ କାହା ହାତରେ କେଜାଣି ! ସେ କହିଲେ– ମୋତେ ଭଲପାଇବାଟା ତମର ଅନ୍ୟାୟ ନୁହେଁ ଯେ, ତେବେ, ମୋତେ ଭଲପାଇନଥିଲେ ବି ତମର ଅନ୍ୟାୟ ହେଇନଥାନ୍ତା ।

X X X X

ସେ ଏଇ ଫଟଟା !

ପ୍ରଥମେ ତ ସେ ଫଟଠାରୁ ଦୂରରେ ରହିବାକୁ ଚେଷ୍ଟାକରିନଥିଲି । ସେ ଫଟଟା ଗୋଟାଏ ସ୍ମୃତି-ଚିହ୍ନ । ଚପଳା ଆଉ ମୋର ସମ୍ପର୍କର ସ୍ମାରକ । ଚପଳା ଆଉ ମୋ ଭିତରେ ଯେଉଁ ସମ୍ବନ୍ଧ, ତାର ସୂତ୍ର ସେ ନଥିଲେ ଚପଳାଙ୍କୁ ପାଇବା ମୋ ଭାଗ୍ୟରେ ଘଟିନଥାନ୍ତା । ତାଙ୍କରି ଯୋଗୁଁ ଚପଳା । ତାଙ୍କରି ଯୋଗୁଁ ଚପଳାଙ୍କର ମୋର ସାନ୍ନିଧ ।

ସେ ମୋତେ ଖୁବ୍ ଭଲପାଉଥିଲେ । ସେଇ ସେଦିନ ଗୋଟାଏ ନିରାଶ୍ରୟକୁ ଆଶ୍ରୟ ଦେଇଥିଲେ ।

ମୁଁ ଘରୁ ଚାଲିଆସିଲି, କାହାରିକୁ କିଛି ନକହି । ମନେକଲି ବାବୁଘରକୁ ଗଲେ ସେଠି କାଳେ କିଛି କାମ ମିଳିବ ।

ବାବୁ ପଚାରିଲେ– ପାଠ ଶାଠ ପଢ଼ିଛ ?

ମୁଁ କହିଲି– ଆଜ୍ଞା ହଁ, ସାମାନ୍ୟ ।

କେତେଦୂର ପଢ଼ିଥିଲ ?

ମାଇନର୍ ଫାଷ୍ଟ୍ କ୍ଲାସ୍ ଯାଏଁ ।

ପାସ୍‌ଟା ବି କରିପାରିଲନାହିଁ ?

ଆଜ୍ଞା, ବଡ଼ ଗରିବ– ମା' ମରିଗଲା– ଆଉ ପଢ଼ିପାରିଲିନାହିଁ ।

ହଁ, ତା ତ କହିଥାନ୍ତି ସମସ୍ତେ । ତେବେ ଆମର ଏଠି କିଛି କାମଦାମ ନାହିଁ ସେମିତି । ଆଚ୍ଛା ବସ । ମୁଁ ଆସେ, –କହି ସେ ଚାଲିଗଲେ ।

ବିଭୂତିବାବୁ ଆସିଲେ, ମୁଁ ଦଣ୍ଡବତ କଲି ।

କାହାକୁ ଖୋଜୁଛ ? ସେ ପଚାରିଲେ ।

ଚାକିରି ଖୋଜୁଛି । ମୁଁ କହିଲି ।

ଓ– ବାପାଙ୍କୁ ପଚାର ବୋଲି କହି ସେ ବି ଚାଲିଗଲେ ।

କିନ୍ତୁ ମହତ୍ ହୃଦୟ ତାଙ୍କର । ତାଙ୍କୁ ଦେଖିଲାକ୍ଷଣି ଭକ୍ତିରେ ମୋ ମୁଣ୍ଡ ଆପେ ନଇଁଗଲା । ମୋର ଦୁଃଖସୁଖ ସବୁ ପଚାରି ବୁଝିଲେ । ମୋତେ ସେ ଚିହ୍ନିଲେ । କହିଲେ, କେଉଁଠି ଦେଖିଲାପରି ଲାଗୁଛି । ମୁଁ ସ୍ମରଣ କରାଇଦେଲି– ୪-୫ ବର୍ଷ ତଳେ ଯାତ୍ରା କରି ଆସିଥିଲୁ । ମୁଁ ପ୍ରହ୍ଲାଦ ହୋଇଥିଲି । ସେତିକିବେଳେ ହୁଏତ ଦେଖିଥିବେ । ସେ 'ହବ' ବୋଲି କହିଲେ । ମୁଁ ପଢ଼ା ଛାଡ଼ି ଭୁଲକଲି ବୋଲି ମୋ ପାଇଁ ଦୁଃଖ କଲେ । କହିଲେ– ଆଚ୍ଛା, ତମେ ମୋ ପାଖରେ ରହ ।

ମୁଁ କହିଲି– ବାପା–

ମୁଁ ବାପାଙ୍କୁ କହିବି ।

ସେ ବାପାଙ୍କୁ କହିଲେ । ବାପା ତାଙ୍କର ତା' କଥା କାଟନ୍ତିନାହିଁ । ମୁଁ ରହିଲି । ଏକ ପ୍ରକାର ତାଙ୍କରି ପାଖରେ ରହିଲି । ସେ କହନ୍ତି– ମୋର ବି ମା' ନାହିଁ ତମର ବି ମା' ନାହିଁ– ଉଭୟେ ସମଦୁଃଖୀ । ତାଙ୍କ ମୁହଁରୁ ଏ କଥାଟା ଶୁଣିଲେ ମୋର ବଡ଼ କଷ୍ଟ ହୁଏ । ଭୁଲିଗଲା କଥାଟା ମନରେ ପଡ଼ିଯାଏ ।

ମୋର ପାଠପଢ଼ିବା ବୟସ ପାରହୋଇ ଯାଇଥିଲା– ନହେଲେ ସେ ମୋତେ ପଢ଼ାଇବାକୁ ମଧ ପ୍ରସ୍ତୁତ ଥିଲେ । କହିଲେ, ସ୍କୁଲରେ ନପଢ଼ିଲୁ ନାହିଁ, ଘରେ ପଢ଼ । ମୋତେ ସେ ବହି ଆଣି ଦିଅନ୍ତି । ଭଲ ଭଲ ବହି ମୋତେ ପଢ଼ିବାକୁ କହନ୍ତି । ଇଂରାଜୀ ପଢ଼ାଇ ଦିଅନ୍ତି । ତାଙ୍କର ମୋ ପ୍ରତି ଏହି ସ୍ନେହଟା ଅତି ଆଶ୍ଚର୍ଯ୍ୟ ଧରଣର । କ୍ରମେ ମୁଁ ତାଙ୍କର ଖୁବ୍ ବିଶ୍ୱାସୀ ହୋଇପଡ଼ିଲି । ଟଙ୍କାପଇସା ବି ମୋ ଜିମାରେ ରଖନ୍ତି । ସେ ଯେଉଁଠିକି ଯା'ନ୍ତି ମୁଁ ତାଙ୍କ ସଙ୍ଗରେ ଯାଏ । ତାଙ୍କୁ ବଡ଼ଭାଇପରି ମାନେ । ମୁଁ ତାଙ୍କର ସେବା କରେ, କିନ୍ତୁ ସେ

ମୋତେ ଚାକରଭାବରେ କେବେ ବ୍ୟବହାର କରନ୍ତିନାହିଁ । ମୁଁ କେବେ ଚାକର ହୋଇନଥାଏ । ତାଙ୍କର ଲୁଗାପଟା-ଜାମା-ଯୋତା ଯେମିତି ହୁଏ ମୋର ପ୍ରାୟ ସେ ସେମିତି କରନ୍ତି । ଥଟ୍ଟାରେ ସେ ଦିନେ ଦିନେ ଡାକନ୍ତି—ଓ—ପ୍ରାଇଭେଟ୍ ସେକ୍ରେଟେରୀ ।

ତା' ପରେ ରଙ୍ଗମଞ୍ଚରେ ଚପଳାଙ୍କର ଉଦୟ । ଗୋଟାଏ ବାହାରର ଲୋକକୁ ଏତେ ବିଶ୍ୱାସ କରିବା ଦେଖି ଚପଳା ପ୍ରଥମେ ଟିକିଏ ଚକିତ ହୋଇଥିଲେ; କିନ୍ତୁ ସେ ବି କ୍ରମେ ଅଭ୍ୟସ୍ତହୋଇପଡ଼ିଲେ ସେଥିରେ ।

ଆଜି ଚପଳା ଯାହା, ସେଦିନ ସେଇୟା ନଥିଲେ । ଚପଳାଙ୍କର ଏ ସଙ୍କୋଚ ଥିଲା ମୋ ପାଖରେ— ଚପଳାଙ୍କର ଇତର ବ୍ୟବହାର ଥିଲା ମୋ ପ୍ରତି । ସେ ଗୋଟାଏ ଅଲଗା ସମ୍ପର୍କ । ମନେହେଲା, ତାଙ୍କପାଇଁ ଚପଳା ସହିତ ମୋର ଯେତିକି ଲୋଡ଼ା, ସେତିକି ଛଡ଼ା ଆଉ କିଛି ଦରକାରନାହିଁ ମୋର ତାଙ୍କଠି ।

ସେ ମୋତେ ଥଟ୍ଟା କରନ୍ତି । ରହସ୍ୟ ବି କରନ୍ତି — ମୁଁ ଚପଳାଙ୍କୁ ନୂଆବୋଉ ଡାକିଲି ବୋଲି ।

ମୁଁ ଦିନେ ଠିଆହୋଇଛି— ଚପଳା ସେଠି ଥାଆନ୍ତି— ସେ ହଠାତ୍ କହିଲେ — ହେଇଟି ତମ ଭାଇକି ମୂର୍ତ୍ତିଏ ମହାପ୍ରସାଦ ଦିଅ ।

ମାହାର୍ଦ୍ଦଫାଆର୍ଦ୍ଦ କିଛି ନାହିଁ— ଏମିତି ଖାଲି ହାତଟା— ସେଇ ବାନ୍ଧିଲା ସମ୍ପର୍କ ମୁଁ ପାଇଲି ସେଇ ବାନ୍ଧିଲା ସମ୍ପର୍କ । ଏଇ ନୂଆ ସମ୍ପର୍କଟାର ଉପକ୍ରମ ଦେଖି ଆଶ୍ଚର୍ଯ୍ୟ ହେଲି, ଆଉ ହସିଲି ବି ।

ତା'ପରେ ନୂଆବୋଉ ବୋଲି ଚପଳାଙ୍କୁ ଡାକିଲେ ସେ କହନ୍ତି— ପୁଣି ନୂଆବୋଉ ! ମୁଁ ବାଧହୋଇ ଅପା ବୋଲି ଡାକେ । ଚପଳା ମୋର ଅପା ହେଲେ— ତାଙ୍କରି ଲାଗି ।

ତାଙ୍କରି ଫଟ ।

ଆଜି ମନର ଏଡ଼େ ବଡ଼ ସନ୍ଦେହଟା, ସେ ଯଦି ଥାଆନ୍ତେ ମୁଁ ତାଙ୍କୁ ପଚାରିଥାନ୍ତି । ଯେମିତି କେତେ କଥା— କେତେ ସାହିତ୍ୟ, ବିଜ୍ଞାନ କଥା ପଚାରି ବୁଝେଁ, ସେମିତି । କିନ୍ତୁ ଏ କଥାଟା କ'ଣ ସାହିତ୍ୟ, ନା ବିଜ୍ଞାନ ଯେ ମୁଁ ତାଙ୍କୁ ପଚାରିବି ? ଏ କଥାଟା ମୁଁ କ'ଣ ତାଙ୍କୁ ପଚାରିପାରିଥାନ୍ତି !

କିନ୍ତୁ ଗୁରୁ ସେ — ଆଶ୍ରୟଦାତା । ଆଜି ଯାଇ ତାଙ୍କ ଫଟ ଆଗରେ ଠିଆହେବାକୁ କାହିଁକି କିଜାଣି ଭାରି ମନହେଲା ।

ଚପଳା ସେଠି ନଥିଲେ । କାନ୍ଥରେ ଫଟଟା ଟଙ୍ଗାହୋଇଥିଲା ।

ଗଲା କେଇ ମାସ ହେବ, ଏ ଫଟଠାରୁ ମୁଁ କାହିଁକି ଦୂରରେ ରହିବାକୁ ଚେଷ୍ଟା କରିଛି । ଆଗରୁ ଠିକ୍ ଏଇୟା ନଥିଲା । ଫଟଟାରେ ମଳି ଲାଗିଗଲେ, କି ଅସୁନ୍ଦର ଦିଶିଲେ ମୁଁ ତାକୁ ସଜାଡ଼ି ଦେଇ ଆସୁଥିଲି । କିନ୍ତୁ ଏବେ ତା' ହେଇପାରୁନାହିଁ । ମୁଁ ଏ ଫଟକୁ ଲୁଚି ଲୁଚି ବୁଲୁଛି । ଆଗରେ ଠିଆହେବାକୁ ସାହସ କରେନାହିଁ । ଆଜି କିନ୍ତୁ ମୋର ସାହସ ହେଲା । ଯେଉଁ ଫଟଟା ଆଖିରେ ପଡ଼ିଗଲାକ୍ଷଣି ମୁଁ କାଲି ହୁଏତ ଆଖି ବୁଜିଦେଇ ମୁହଁ

ଫେରାଇନେଇଥାନ୍ତି– ସେଇ ଫଟକୁ ଚାହିଁ ଠିଆହେଲି । ଆଜି ମୋର ସାହସ ଯେମିତି ବଢ଼ିଯାଇଛି । ମୋ ଭିତରେ ଯେମିତି ଆଜି ସବୁ ସଫା ।

ସେ ଫଟ ଯେମିତି ମୋତେ ଖୁବ୍ ଜୋର୍‌ରେ ଦାନ୍ତ କଡ଼ମଡ଼ କରି କହିଲା– ତୁ ଚୋର, ତୁ ଠକ, ତୁ ବିଶ୍ୱାସଘାତକ, ଖଣ୍ଡ, ଡାକୁ– ସୟତାନ୍ !!

ଏ ଭର୍ତ୍ସନା ମୁଁ ସହ୍ୟ କରିପାରିଲିନାହିଁ । ଭୟରେ, ଲଜ୍ଜାରେ ମୁଁ ଆଖି ବନ୍ଦକରି ପକାଇଲି– ତଳକୁ ମୁହଁ ପୋତିଦେଲି ।

ଅନୁରୋଧ କଲି, ମିନତି କଲି– ମୋତେ ବିଶ୍ୱାସ କର– ମୁଁ ଚୋର ନୁହେଁ – ମୁଁ ଡାକୁ ନୁହେଁ– ମୋର ସରଳ ହୃଦୟକୁ ଚପଳାଙ୍କର ଭଲପାଇବା ଭୁଲେଇ ଦେଇଛି । ମୁଁ ଅତି ସରଳଭାବରେ ଚପଳାଙ୍କୁ ଭଲପାଇଛି– ଏଥିରେ ପାପନାହିଁ– ଏଥିରେ ଲାଳସା ନାହିଁ ।

କିନ୍ତୁ ସେଦିନ ?

ସେ ଦିନ ? ସେ ଦିନ ମୁଁ କିଛି ଅପରାଧ କରିନାହିଁ । ମୋର ଏହି ହୃଦୟଟା ମୋତେ ପ୍ରତାରିତ କରିଛି । ମୁଁ ସତ କହୁଛି– ଭଗବାନଙ୍କୁ ସାକ୍ଷୀରଖି କହୁଛି ମୁଁ ତା' ଚାହିଁ ନାହିଁ ।– କିନ୍ତୁ–କିନ୍ତୁ ହୃଦୟ କ'ଣ ପ୍ରତାରଣା କରିପାରେ ? ନା– ନା, ହୃଦୟ ପ୍ରତାରଣା କରିପାରେନା– ହୃଦୟ ଏତେ ଆପଣାର– ଏତେ ନିକଟର– ଏତେ ନିଜର– ଏପରି ଅବିଚ୍ଛେଦ୍ୟ ଯେ ସେ କେଉଁ ନିଜକୁ ପ୍ରତାରିତ କରିବାକୁ ଚାହିଁବନାହିଁ । ପ୍ରତାରିତ କରେ ମନୁଷ୍ୟର ବୁଦ୍ଧି ।

ମନୁଷ୍ୟ ଯା'କୁ ନିତାନ୍ତ ଅବିବେକ ଭାବରେ ସବୁଠାରୁ ବଡ଼ ବୋଲି କହି ପୌରୁଷ କରେ ତାହାରି ଅଧିକାର ଗର୍ବରେ– ସେଇ ବୁଦ୍ଧି, ମଣିଷକୁ ପ୍ରତାରିତ କରେ– ସେଇ ବୁଦ୍ଧି । ବିଶ୍ୱସ୍ତ ହୃଦୟ ତା ପାରେନା । ମଣିଷ ସେଇ ବୁଦ୍ଧିର ଗର୍ବରେ ମତୁଆଲା ହୋଇ ହୃଦୟକୁ ହତ୍ୟାକରେ । ଭୀରୁ କାପୁରୁଷ ଯେପରି ନିରୀହ ସାଧାରଣ ଜୀବକୁ ହତ୍ୟାକରି ନିଜର ଆତ୍ମ-ଅଭିମାନ ଅପକୃତ ଶକ୍ତିକୁ ସାବ୍ୟସ୍ତ କରିବାକୁ ଚାହେଁ, ଦୁର୍ବଳ ମନୁଷ୍ୟ ସେଇପରି ବୁଦ୍ଧି ଖାତିରିରେ ଧର୍ମ ନ୍ୟାୟର ବାହାନା କରି ହତ୍ୟା କରେ ତାର ନିଜର ହୃଦୟକୁ– ନିତାନ୍ତ ଅନ୍ଧଭାବରେ– ବୁଦ୍ଧି ବିରୁଦ୍ଧରେ ଅଭିଯାନ କରିବାପାଇଁ ତାର କ୍ଷମତା– ତାର ସାହସ ଏକାବେଳକେ ଲୋପପାଇଥାଏ ବୋଲି ।

ସେଦିନ ? ସେଦିନ ଜଣକ ହୃଦୟର ନିବେଦନ ମୋର ସମଦଶାପନ୍ନ ହୃଦୟରେ ଆଘାତ କଲା । ସେହି ସହାନୁଭୂତିରେ ମୁଁ ଯାହା କରିଛି– ଯାହା କଲି– ସେଟା କ'ଣ ମୋର ଅପରାଧ ? ସେଟା କ'ଣ ମୋ ନିଷ୍ଠୁରତାର ପରିଚୟ ଦିଏ– ଯଉଁଥିପାଇଁ ଆଜି ଲୋକ ଆଖିରେ ବିଶ୍ୱାସଘାତକ– ପ୍ରତାରକ– ଶଠ– ଡାକୁ ହେବି ?

କିନ୍ତୁ– ସେ ଫଟ ଯେପରି ଭ୍ରୁକୁଟିର ହସ ହସି ଅତି କରୁଣ କଣ୍ଠରେ କହିଲା– ଯେଉଁ ହୃଦୟରେ ତା ହୃଦୟର ଦୁଃଖକୁ ଏଡ଼େ ଗଭୀରଭାବରେ ଅନୁଭବ କଲୁ, ସେ ହୃଦୟରେ ଏ ମରିଗଲା ମଣିଷଟିପାଇଁ ଟିକିଏ ବି ସହାନୁଭୂତି ହେଲାନାହିଁ ? ତୁ କ'ଣ ଏଡ଼େ ବଡ଼ ଉଦାର ମୁକ୍ତହୃଦୟ ଘେନି ଏତିକି ବୁଝିପାରିଲୁନାହିଁ ? ମୋ ଜିନିଷ ମୋଠାରୁ ଦୂରକରି ଦେବାରେ–

କେବଳ ସେଇ ଜିନିଷଟା ତୋର ହେବାକୁ ଚାହେଁ ବୋଲି– ମୋଠାରୁ ଏଡ଼େ ନିଦାରୁଣ, ନିର୍ମମ ଭାବରେ ଛଡ଼ାଇ ନେବାରେ ମୋର କେଡ଼େ ଦୁଃଖ, ମୋ ହୃଦୟରେ କେଡ଼େ ଆଘାତ ହୋଇଥିବ ?

ତା ହେଲେ– ତା ହେଲେ – ମୁଁ କ'ଣ ଭୁଲକରିଛି ?

ମୋର ବ୍ୟସ୍ତ ହେବା ଦେଖି, ମୋର ଆକୁଳତା, ଅନୁତାପ ବୁଝିପାରି ସେ ଫଟ ଯେମିତି ମୋତେ ଜବାବ ଦେଲା– ନା– ନା, ତୁ ଭୁଲ୍ କରିନାହୁଁ– ତୋର ହୃଦୟ ବି ତୋତେ ଭୁଲେଇନାହିଁ, ତୁ ନିଜେ ହୃଦୟଟାକୁ ଭୁଲ୍ ବୁଝିଲୁ ।

X X X X

ସେଦିନ ଶକୁନ୍ତଳା ଅଭିନୟ ।

ମୁଁ ଦୁଷ୍ମନ୍ତ ହୋଇଥାଏଁ । ମୋ ଅଭିନୟ ଭଲହୋଇଥିଲା । ମୁଁ ପଦକ ଅନେକ ପାଇଲି । ନିଜେ ବାବୁ– ଚପଳାଙ୍କର ଶଶୁର– ସେ ବି ଗୋଟେ ପଦକ ଦେଲେ ।

ଯାତ୍ରା ଶେଷରେ, ମୁଁ ଯାଇ ଚପଳାଙ୍କୁ ପଚାରିଲି– କେମିତି ହେଲା ?

କିଛି ହେଲାନାହିଁ । ସେ କହିଲେ–

ନାଇଁ, ସତେ !

କେତେଟା ମେଡଲ୍ ପାଇଲ ମୋଟରେ ?

କେଜାଣି କେତୁଟା– ଅନେକଗୁଡ଼ା । ନାଇଁ, ସତେ କିମିତି ଲାଗିଲା ?

ହାତ ଦେଖେ !

କାହିଁକି ? –କହି ମୁଁ ହାତ ଦେଖେଇଲି ।

ସେ ମୋ ହାତଟାକୁ ଧରି କହିଲେ– ଏତେ ଲୋକ ତ ମେଡ଼ଲ୍ ଦେଲେ– ମୁଁ ଦେଲି ଏଇଟା । କହି ସେ ମୁଦିଟିଏ ନେଇ ମୋ ଆଙ୍ଗୁଳିକି କଛି ଦେଖିଲେ– ହେଉଛି । ପିନ୍ଧାଇ ଦେଇ କହିଲେ ଏଟା ହଜେଇବନାହିଁ ।

ମୋ ଦିହ ସେତେବେଳକୁ ଫୁଲିଉଠୁଥିଲା ।

ମୁଁ ତାଙ୍କୁ ଚାହିଁଦେଲି । ସେ ମୋତେ ଚାହିଁଦେଇ ତଳକୁ ମୁହଁ କଲେ । ଆଜି ଯେତେବେଳେ ସେଇ ଦୁଷ୍ମନ୍ତ ହେଇ ଠିଆହୁଏ, ଶକୁନ୍ତଳାକୁ ସେଇ ମୁଦିଟି ପିନ୍ଧାଇ ଦିଏଁ– ଭାବେ– ସେତେବେଳେ ବି କ'ଣ ମୋ ହୃଦୟଟାକୁ ମୁଁ ଭୁଲ୍ ବୁଝିଥିଲି ?

ମନେହେଲା– ମଣିଷର ବୋଧହୁଏ ହୃଦୟ ନାହିଁ । ମଣିଷର ଗୋଟାଏ ଦୁର୍ବଳତାକୁ ପ୍ରଶ୍ରୟ ଦେବାର ଅନ୍ୟ ନାମ ବୋଧହୁଏ ହୃଦୟ ।

X X X X

ମଣିଷ ତେବେ ଏ ଦୁର୍ବଳତାକୁ ଏଡ଼ିବ କେମିତି ?

ଭାବିଲି ମଣିଷ ଦୁର୍ବଳ ବୋଲି ସ୍ୱୀକାର ନକରି – ଦୁର୍ବଳତାକୁ ଲୁଚାଇ ରଖିବାରେହିଁ ବୋଧହୁଏ ଦୁର୍ବଳତା ଜୟର ଉତ୍କୃଷ୍ଟ ପନ୍ଥା ।

ମୁଁ ଆହୁରି ଉତ୍ସାହରେ ନାଟକ କଲି । ମୋତେ ଖୁବ୍ ସୁବିଧା ବି ହେଲା ନାଟକ ପାଇଁ । ବାବୁ ନିଜେ ନାଟକକୁ ତାଙ୍କ ନିଃସଙ୍ଗ ଜୀବନର ଏକମାତ୍ର ଅବଲମ୍ବନ ବୋଲି ମନେକଲେ । ସେ ନିଜେ ନାଟକର ଭଲ ମନ୍ଦ ବୁଝିବାକୁ ଆରମ୍ଭ କରିଦେଲେ ।

ମୋ ପ୍ରସ୍ତାବରେ ନାଟକ ଥିଏଟର୍‌ରେ ପରିଣତ ହେଲା । ଆମେ କ୍ରମେ କ୍ରମେ ବାହାରେ ଥିଏଟର କରିବାକୁ ସାହସ କଲୁ । ଟୁରିଂଦଳ ଗଢ଼ିନେଲୁ । ଟିକଟ କରି ନାନାଦି ସହର ମଫସଲରେ ଖେଳଦେଲୁ । ମୁଁ ସେଥିପାଇଁ ବାଧ ହୋଇ ବାହାରେ ଥାଏ । ଯେବେ ଏଠିକି ଆସେଁ ଅଧିକାଂଶ ସମୟରେ ଆଖଡ଼ା ଘରେ ରହେଁ । ଦିହପା ହେଲେ ସେଇଠି ଶୋଇଥାଏ । କାହାକୁ କିଛି କହେନାହିଁ । ବେଦନାରେ ଛଟପଟ ହୁଏଁ– ଚିତ୍କାର କରିଉଠେ– ମନହୁଏ ଚପଳାଙ୍କୁ ସେଇଭଳି ଚିତ୍କାର କରି ଡାକିବାକୁ । କିନ୍ତୁ ମୁଁ ଆଖିଖୋଲି ଦେଖେଁ– ଆଉ ଡାକି ଲାଭନାହିଁ । ମୁଁ ଚପଳାଙ୍କଠୁଁ ଦୂରକୁ ଦୂରକୁ ଚାଲିଯାଉଛି– ଯେଉଁବାଟେ ଆସିଥିଲି, ସେଇବାଟେ ପଛେଇ ପଛେଇ ଚାଲିଯାଉଛି– କିଏ ଯେମିତି ମୋତେ ସେଇମିତି ଫେରିଯିବାକୁ ଭୟ ଦେଖାଇ ବାଧ କରୁଛି । ମୁଁ ତଥାପି ଚପଳାଙ୍କୁ ଡାକୁଛି– ଖୁବ୍ ଜୋର୍‌ରେ ଡାକୁଛି ମନେ ମନେ । କିନ୍ତୁ ସେ ଡାକ ତାଙ୍କୁ ଶୁଭୁନାହିଁ । ମୁଁ ଛାଟିପିଟି ହେଉଛି– ଚପଳା ତା ଦେଖିପାରୁନାହାନ୍ତି । ମୁଁ କାନ୍ଦୁଛି– ଚପଳା ଶୁଣିପାରିଲେ ବି ତାଙ୍କୁ ଯେମିତି ବାଧନ୍ତା ନାହିଁ ।

ଏ କ'ଣ ହେଲା ? ଏମିତି କାହିଁକି ହେଲା ? ମୋ ମୁଣ୍ଡ ଘୂରେଇଦିଏ । ମୋତେ ସବୁ ଅନ୍ଧାର ଦିଶେ ।

ମୁଁ ଆଶ୍ଚର୍ଯ୍ୟହୋଇ ଚାହେଁ– ମୋ ଆଖିରେ ଚପଳା ଆଉ ସେ ଚପଳା 'ପରି ଦିଶୁ ନାହାନ୍ତି କାହିଁକି ?

ମୁଁ ନିଜକୁ ଚାହେଁ– ମୁଁ ବି ସେମିତି ଚପଳାଙ୍କ ଆଖିରେ ଆଗଭଳି ବଡ଼ ହୋଇ ରହିନାହିଁ– ଚପଳା ମୋତେ ଆଜି ଆଉ ଦୁନିଆ ଆଗରେ, ସମାଜ ଆଗରେ ଟେକିଧରି ରହିନାହାନ୍ତି । ସେ ମୋତେ ଆଉ ସେମିତି ଆଗପରି ଦୁନିଆର ସମସ୍ତଙ୍କଠୁଁ ବେଶି ଭଲପାଆନ୍ତିନାହିଁ– ତାଙ୍କର ମୁଁ ସମସ୍ତଙ୍କଠାରୁ ବେଶି ଆପଣାର ହୋଇନାହିଁ । ଏମିତି ହେଲା କାହିଁକି ?

ଚପଳାଙ୍କ ଦିହ ଭଲ ନଥାଏ । ମୋର ଦୟା ହେଲା । ମୋର ହୃଦୟ ମୋତେ ଠକେଇପାରିଲାନାହିଁ । ମୁଁ ଯାଇ ତାଙ୍କ ପାଖରେ ବସିଲି । ମୁଣ୍ଡ ଆଉଁସିଦେଲି । ସେ କହିଲେ– ଥାଉ ।

ଔଷଧ ଖାଇ ନଥିଲେ । ମୁଁ ଔଷଧ ନେଇ ଦେଲି । ସେ ମନାକଲେ । ମୁଁ ତାଙ୍କୁ ବୁଝେଇଲି– ଔଷଧ ନଖାଇଲେ ଦିହ ଭଲହେବ କେମିତି ? ସେ ମାନିଲେନାହିଁ ।

ବିଭୂତି ଆସିଲେ । ଔଷଧ ଖିଆହୋଇ ନାହିଁ ଦେଖି ସେ ନିଆଁ ହେଇଗଲେ । କହିଲେ– ଔଷଧ ନଖାଇବ ତ ମୁଁ ଆଉ ଡାକ୍ତରଫାକ୍ତର ଡାକି ଆଣିପାରିବି ନାହିଁ– ଆଉ ଔଷଧ କିଣି ଅଯଥା ପଇସା ଖର୍ଚ୍ଚ କରିପାରିବିନାହିଁ । ନଖାଇବ–ସେଇମିତି ପଡ଼ିଥାଅ । ଆଉ, ଦିହ ହଉଚି ବୋଲି ପୁଣି ମୋ ଆଗେ କହିବନାହିଁ ।

ଏଥର ସେ ଔଷଧ ଖାଇଲେ । ସେ ବିଭୂତିକି ଏମିତି ଭାବରେ ଚାହିଁଲେ, ଯେଉଁଥିରେ ଡର ଥିଲା, ଆଉ ଥିଲା ବିଭୂତିଙ୍କ ସେଇ ଆଚରଣର ଅନୁମୋଦନ ।

ମୁଁ ଭାବିଲି ସ୍ତ୍ରୀ ବୋଧହୁଏ ପୁରୁଷର କରୁଣତା, ଦୟାର୍ଦ୍ରତା, ନମ୍ରତାକୁ ଭଲପାଏ ନାହିଁ । ସେ ଚାହେଁ ପୁରୁଷର ଦୃଢ଼ତା— ପୁରୁଷର ଆଧିପତ୍ୟ ।

ମୋର ମନେହେଲା, ସହଜରେ ମିଳିବା ଜିନିଷକୁ— ସେ ଜିନିଷ ପଛେ ଯେତେ ଦାମ୍ ହୋଇଥାଉ— ମଣିଷ ଯେମିତି ତୁଚ୍ଛ ହେୟ ମନେକରେ, ଚପଳାଙ୍କ ଆଖିରେ ମୁଁ ସେଇମିତି ସହଜଲଭ୍ୟ ହୋଇପଡ଼ିଲି । ମୋ ଦୁର୍ବଳତାର ସୁଯୋଗ ନେଇ ସେ ମୋ ସାଙ୍ଗରେ ଆଜି ଖେଳିବାକୁ ସାହସ କଲେ ।

ସେଥିପାଇଁ କି ଆଜି ତାଙ୍କ ପାଖରୁ ଛଡ଼ାରେ ରହିବାକୁ ଇଚ୍ଛା ହେଲା । ମୁଁ ଅଲଗା ହେଲି ।

କିନ୍ତୁ ତଥାପି ମୋର ଦୁର୍ବଳତାକୁ ମୁଁ ଭୁଲିଯାଇ ପାରିଲି ନାହିଁ । ମୁଁ ଚପଳାଙ୍କଠାରୁ ଯେତିକି ଦୂରରେ ରହିବାକୁ ଚେଷ୍ଟାକଲି— ଚପଳା ନୁହନ୍ତି— ଚପଳାଙ୍କର ଗୋଟିଏ ଛାୟା ଯେମିତି ଆସି ସବୁବେଳେ ମୋତେ ଗୋଟିଏ ମାୟାଜାଲରେ ଘେରିପକାଇଲା ସେତିକି ଛନ୍ଦଣ-ମନ୍ଦଣ କରି । ଆଖିବୁଜି ଦେଖେଁ— ଏବେ ବି ମୋ ଭିତରେ ଚପଳାଙ୍କ ପ୍ରତି ଭଲପାଇବା ଅଛି । ଆଉ ଏଇ ଅଭିମାନ— ଏଇ ଛଡ଼ାଛଡ଼ି— ଏସବୁ ଯେମିତି ଆଜି ସେଇ ଅଭିଯୋଗର ସାକ୍ଷୀ ।

ମୁଁ ଚପଳାଙ୍କ ପାଖକୁ ଯାଇ ଦେଖେ— କାହିଁ ସେ' ତ ଉପରକୁ ଦେଖିବା ପାଇଁ କିଛିହେଲେ ବଦଳିନାହାନ୍ତି । ଅଭିମାନ କି ରାଗର ଲକ୍ଷଣ ତ କେଉଁଠି ତାଙ୍କର ଫୁଟି ଦେଖାଯାଉନାହିଁ ।

ମୋର ମନେହେଲା— ଚପଳା ଯେମିତି ମୋତେ କହୁଛନ୍ତି— ଭିକାରି, ମୋର ଏତେ ଭଲପାଇବା— ତମଠାରୁ କ'ଣ ମୁଁ କିଛି ଗୋପନ ରଖିଛି ?— ତା'ପରେ ବି ଗୋଟାଏ ଭୁଲ୍‌କୁ ତମେ ଭୁଲିଯାଇପାରିଲନାହିଁ ।

ଏଡ଼େ ବଡ଼ ଜୀବନଟା—

ମୁଁ ଫେରିଆସେ । ସବୁବେଳେ ମନେପଡ଼େ— ଗୋଟାଏ ଭୁଲ ତ ଏଡ଼େ ବଡ଼ ଜୀବନଟା, ପୁଣି କେତେ ଭୁଲ୍ କାହାର ନ ହେବ, ଏଇ ଗୋଟାଏ ଭୁଲ୍ ଯୋଗୁଁ ମୁଁ ଚପଳାଠୁଁ ଅଲଗା ହୋଇଗଲି । କ୍ଷମା କରିପାରିଲିନାହିଁ ।

କିନ୍ତୁ ମଣିଷ ଇଚ୍ଛାକରି ଜାଣିଶୁଣି ଯେଉଁ ଭୁଲ୍‌ଟାକୁ କରେ ସେଥିପାଇଁ କ୍ଷମା ଥାଇପାରେ, ଯେଉଁ ଭୁଲ୍‌ଟା ମନକୁ ମନ ହେଇଯାଏ, ତାର କ୍ଷମା ମଣିଷ ଦେଇପାରିବ କେମିତି ?

ସେଥିପାଇଁ ଜାଣିଶୁଣି ହେଇଯିବା ଭୁଲ୍ ପାଇଁ କ୍ଷମା ଦେଲେ ମଣିଷ ସେମିତି ଜାଣିଶୁଣି ଆଉ କେବେ ଭୁଲ୍ ନକରିବାକୁ ଅନ୍ତତଃ ଚେଷ୍ଟାକରେ; କିନ୍ତୁ ଯେଉଁ ଭୁଲ୍‌ଟା ଆପେ ଆପେ ହେଇଯାଏ, ତାକୁ କ୍ଷମା କଲେ କେତେ ନକଲେ କେତେ, ସେ ସହଜରେ ସୁଧୁରିବା ଜିନିଷ ନୁହେଁ ।

ମଣିଷର ପ୍ରାଣ ନଥାଏ, ସେ ଅନେକ ଜିନିଷ କରିଯାଏ— ଠିକ୍ ବି କରେ, ଭୁଲ୍ ବି କରେ— ସେଇ ଭୁଲ୍‌ପାଇଁ କ୍ଷମା ଅଛି ।

ମଣିଷ ବାହାରକୁ ବୁଝିପାରୁନାହିଁ ଅଥଚ ଭିତରର ନିର୍ଦ୍ଦେଶରେ ସେ ଯେଉଁ ଭୁଲ୍ କରେ, ସେଥିପାଇଁ କ୍ଷମା କିଏ ଦେବ ?

ଚପଳାଙ୍କର ଯାହା ଭୁଲ୍ ହୁଏ, ସେଟା ଇଚ୍ଛାକରି ନୁହେଁ । ସବୁ ଭିତରର ପ୍ରବର୍ତ୍ତନ । ସେ ଇଚ୍ଛା କରନ୍ତି– ଯଉଁ ବିଭୂତିବାବୁଙ୍କୁ ମୋତେ ଏକାଆଖିରେ ଦେଖିବାପାଇଁ– ମୁଁ ଯେମିତି ନବୁଝେ ଯେ ସେ ବେଶି ବିଭୂତିକୁ ଭଲପାଉଛନ୍ତି; କି ବିଭୂତି ଯେମିତି ନବୁଝନ୍ତି ଯେ ସେ ମତେ ବେଶି ଭଲପାଉଛନ୍ତି ବୋଲି । କିନ୍ତୁ ସେଟା ହୁଏନାହିଁ ।

ଅନେକ ରାତିରେ ମୁଁ ଫେରିଲି । ସବୁଦିନେ ଡେରି ହୁଏ– ଆଜି ବି ହେଇଥିଲା ଡେରି । ସେତେବେଳଯାଏଁ କିନ୍ତୁ ବିଭୂତି ଆସିନଥିଲେ । ମୁଁ ଯେଉଁଦିନଠୁଁ ଯାତ୍ରା ଉପରେ ଜୋର୍ ଦେଲିଣି ସେଦିନରୁ ମୋ ଖାଇବାବେଳେ ଆଉ ଚପଳାଙ୍କୁ ଦେଖେନାହିଁ । ବେଶି ରାତି ହୋଇଥାଏ ବୋଲି ଶୋଇପଡ଼ିଥାନ୍ତି । କିନ୍ତୁ ଆଜି ଦେଖିଲି ସେ ଶୋଇନାହାନ୍ତି । ମୁଁ ଡାକିଲି, ଖାଇବ ଆସ । କହିଲେ– ବିଭୂତି ଆସୁ ।

ତହିଁ ପରଦିନଠୁଁ ମୁଁ କେତେବେଳେ ଖାଏ, କେତେବେଳେ ନଖାଏ ତାର କିଛି ଠିକ୍ ଠିକଣା ନଥାଏ ।

X X X X

ଆମେ ଯାଉଁ ଥିଏଟର କରି ଘରୁ ବାହାରି । ମାସେ ପନ୍ଦରଦିନେ ମୁଁ ଥରେ ଖଣ୍ଡେ ଆସେ । ଦେଖେଁ ଚପଳା ବସି କାମ କରୁଛନ୍ତି । ମୁଁ ଯାଇ ଠିଆହୁଏଁ । ସେ ମୋତେ ଅନେଇ ଦେଇ ପୁଣି କାମରେ ଲାଗନ୍ତି । କାମ କରୁଁ କରୁଁ ପଚାରନ୍ତି– କେତେବେଳେ ଆସିଲ କି ? ଦେହ ଭଲ ଥିଲାନା ?

ମୁଁ ହଁ ମାରେଁ ।

କିନ୍ତୁ ବିଭୂତି ଆସିଲେ ଯେଡ଼େ ବଡ଼ କାମ ଥାଉ, ସେ ଛାଡ଼ି ପକାଇଯା'ନ୍ତି ବିଭୂତି ପାଖକୁ ।

ଏଥିରେ କ'ଣ କିଛି ଭୁଲ୍ ନାହିଁ– କିଛି ଦୋଷ ନାହିଁ ?

X X X X

ମୁଁ ଏତେଦିନ ପରେ ବିଦେଶରୁ ଫେରେ, କେତେ ଅଭିଜ୍ଞତା କେତେ ନୂଆ କଥା ମନ ଭିତରେ ନେଇ । ଇଚ୍ଛାହୁଏ, କାହା ଆଗରେ କହନ୍ତି ! କାହାକୁ କହିବି ? ଚପଳା ଛଡ଼ା ଆଉ ମୋର କିଏ ଅଛି ?

କିନ୍ତୁ ମୋ କଥା ଶୁଣିବାକୁ ଚପଳାଙ୍କର ଧୈର୍ଯ୍ୟ ନଥାଏ– ସମୟ ନଥାଏ । ସକାଳୁ ସଞ୍ଜଯାଏ, ତାଙ୍କର କଟେ ବିଭୂତି ସାଙ୍ଗରେ କଥା କହି– ରାତି ରାତି ପାହିଯାଏ ।

ଏଥିରେ ବି ଭୁଲ୍ ହେଲା ଭଳି କିଛି ନଥିଲା– ନା ?

କିନ୍ତୁ ତଥାପି ଚପଳା ଇଚ୍ଛାକରି ଏସବୁ କରନ୍ତିନାହିଁ । ମୁଁ ଏଟା ଭଲକରି ଜାଣେ । ମୁଁ ବୁଝିପାରେଁ ।

ମୋର ଲୁଗାପଟା ହଜିଲା— ଜାମା ହଜିଲା, ଜୋତା ହଜିଲା— ମୁଁ ଚପଳାଙ୍କୁ ପଚାରେଁ । ଚପଳା କହନ୍ତି— ସେ ଦେଖିନାହାନ୍ତି । ସେ ମୋପାଇଁ ଦୟାକରି ଚାକରବାକରଙ୍କୁ ପଚାରନ୍ତି । ଚାକରବାକର ବି କହନ୍ତି— ସେମାନେ କେହି ଦେଖିନାହାନ୍ତି ବୋଲି । ଯାହା ହଜିଯାଏ ଥରେ ସେ ଆଉ ମିଳେନାହିଁ— ସେ ଆଉ ମିଳିବ ବି ନାହିଁ । କେମିତି ମିଳିବ ?

କିନ୍ତୁ ବିଭୂତିବାବୁଙ୍କର ସ୍ତ୍ରୀ ଥିବାବେଳେ, ତାଙ୍କ ଲୁଗାପଟା ଯେତେ ଯତ୍ନରେ ରଖାଯାଉ ନଥିଲା, ଏବେ ତାଙ୍କର ପ୍ରତ୍ୟେକଟି ଜିନିଷ ତାଠୁଁ ଢେର୍ ବେଶି ହେପାଜତ୍‌ରେ ସାଇତା ହେଇ ରହୁଛି ।

ତଥାପି ମୋତେ ଭାବିବାକୁ ହେବ, ଚପଳାଙ୍କର ସେଇ ଗୋଟାଏ ଭୁଲ୍‌ପାଇଁ ମୁଁ ତାଙ୍କୁ କ୍ଷମା କରିପାରିଲି ନାହିଁ ? ମୁଁ କେଡ଼େ ନୀଚ ସତେ ! ମୁଁ ପାରିଲିନାହିଁ । ଚପଳାଙ୍କୁ— ଯାହାଙ୍କୁ ମୁଁ ଏତେ ଭଲପାଉଥିଲି, ତାଙ୍କୁ ଯେ କ୍ଷମାକରିପାରୁନାହିଁ—ଓଃ— ଏଇଟା ଯେ କେଡ଼େ କଷ୍ଟ, କେଡ଼େ ଦୁଃଖ— କିମିତି କହିବି ?

ଚପଳା, ତମେ ପଛେ ଆପେ ଆପେ କ୍ଷମା ନଚାହଁ— କ୍ଷମା ଦେବାପାଇଁ ମୋତେ ଅନୁରୋଧ ନକର— ମୁଁ ତମକୁ ମାଗୁଛି— ନେହୁରା ହେଉଛି ମୋତେ ଥରେ ତମେ ଅନୁମତି ଦିଅ ତମକୁ କ୍ଷମା ଦିଏଁ ।

କିନ୍ତୁ ତା' ବି ହେବାର ନୁହେଁ— ହେଲାନାହିଁ ।

X X X X

କାଳିଆ କହିଲା— ବାବୁ, ସାନ୍ତାଣୀ ସାନବାବୁଙ୍କ ଆଗେ କହୁଥିଲେ, ତମେ କାଳେ ଆମକୁ ଖରାପ କରୁଛ । ଆମର ତମେ କ'ଣ କରୁଛ କାହିଁ ?

ଗୁରୁବାରୀ କହିଲା— ନାଇଁ ବାବୁ, ଆମେ ତମର ଖିଦିମତ କରିପାରିବୁନାହିଁ । ଏତେ କଥା କିଏ ଶୁଣିବ ? ତମେ କାହିଁକି ଆମକୁ ମୁହଁ ଦବ ? ଆମେ ତମର କିଏ କି ? ତମର ଆମକୁ କି ଲଗା ?

ଗୋମାସ୍ତା କହିଲା— ବାବୁ, ଥିଏଟରରୁ ଯେତେ ପଇସା ଆଣୁଛ ସବୁ କୁଆଡ଼େ ଘରକୁ ପଠେଇଦଉଛ । ହଁ ହୋ, ଏଇୟା ତ ସେଦିନ ସାନସାନ୍ତାଣୀ ବିଭୂତିବାବୁଙ୍କୁ କହୁଥିଲେ ।

ମୁଁ ବିଶ୍ୱାସ କରିପାରିଲିନାହିଁ । ଭାବିଲି, ସେ କ'ଣ କହିଥିବେ, ଏମାନେ ତିଳକୁ ତାଳକରି ମିଶେଇ ସଜେଇ କହୁଛନ୍ତି । ଚପଳାଙ୍କୁ ମୋର ଏତେଦୂର ସନ୍ଦେହ କରିବା ଉଚିତ ନୁହେଁ ।

କିନ୍ତୁ ସେଦିନ ମୁଁ ଘର ଭିତରକୁ ପଶିଗଲି । ବିଭୂତି ଚପଳା ଦୁହେଁଯାକ ଅତି ଲଗାଲଗି ହୋଇ ବସିଥିଲେ । ମୋ ଯିବା ଶବ୍ଦଶୁଣି ହଠାତ୍ ତାଙ୍କ କଥାଖିଅ ଛିଡ଼ିଗଲା । କିନ୍ତୁ ଚପଳାଙ୍କର ଯେଉଁ କଥାପଦକ ଓଠରେ ଉଠି ଭୟବିହ୍ୱଳତାରେ ଓଠରେହିଁ ଅଟକିଗଲା, ସେତକ ମୋ କାନରେ ବାଜିଗଲା ।

ସେ କହିଲେ— ଭିକାରି ଶୁଣିବଟି !

ମୁଁ ଗଲାକ୍ଷଣି ଚପଳା ପଚାରିଲେ— ଏତେବେଳଯାଏଁ କୁଆଡ଼େ ଥିଲ ?

ମୋତେ ହସମାଡ଼ିଲା । କିନ୍ତୁ ହସିପାରିଲିନାହିଁ, ଭାବିଲି– ଶ୍ରଦ୍ଧା, ସ୍ନେହ, ସୁଖ ପାଇବା ବି କ'ଣ ଦୂଷିତ ହୋଇପାରେନା ? ଭୋଜବାଜୀ ପରି ଏଡ଼େ ବଡ଼ ସତ୍ୟଟାକୁ ବି ଶୂନ୍ୟରୁ ଆଣି ଦେଖାଇଦେଇ ହୁଏନା ?

ଆଉ, ଯିଏ ସ୍ନେହକୁ ହିଂସାରେ ପରିଣତ କରିପାରେ– ଯିଏ ଅମୃତକୁ ବିଷ କରି ଦେଇପାରେ ସେ କ'ଣ ମଣିଷ ?

ଚପଳା ତ ମଣିଷ । ହାତଗୋଡ଼ ଆଖିକାନ ସବୁ ମଣିଷ ପରି । କିନ୍ତୁ ଭିତରଟା ମୋ ଆଖିକି ଜଳଜଳ ହୋଇ ଦିଶୁଥାଏ– ସେଠି ଯେମିତି ଗୋଟାଏ ହିଂସ୍ର ବିକଟାଳ ପଶୁ– ମୋତେ ଗ୍ରାସ କରିବାପାଇଁ ଯେପରି ସବୁବେଳେ ଉଦ୍ୟତ ।

ଆଉ ମନଲାଗିଲାନାହିଁ । ଯେଉଁଠିକି ଗଲି ସେଠି ସେଇ ଶବ୍ଦଟା ଶୁଭିଲା– ଭିକାରି ଶୁଣିବ !

କାନ୍ଥରେ ଲେଖାଥିଲା– ଭିକାରି ଶୁଣିବ ।

ବାଡ଼ରେ ଟଙ୍ଗା ଥିଲା– ଭିକାରି ଶୁଣିବ ।

ବଡ଼ା ଭାତଥାଳିରୁ ଭାତକୁ ଭାଙ୍ଗି ଆଣିଲେ ଦିଶୁଥିଲା– ଭିକାରି ଶୁଣିବ !

ଚପଳାଙ୍କର ଲୁଗା ଶୁଖୁଥିଲା– ସେଥିରେ ବି ଲେଖାଥିଲା– ଭିକାରି ଶୁଣିବ ।

ଚାରିଆଡ଼େ– ଭିକାରି ଶୁଣିବ । ଭିକାରି ଚାକରବାକରଙ୍କୁ ଶିଖେଇ ମୁହଁ ଦେଉଛି– ଭିକାରି ସମସ୍ତଙ୍କୁ ଖରାପ କରୁଛି– ଭିକାରି ଥିଏଟରରୁ ପଇସା କରି ବଡ଼ଲୋକ ହେଇଗଲାଣି– ଘରକୁ ପଇସା ପଠାଉଛି ।

ସେଇ ଘର, ସେଇ ମଣିଷ, ସେଇ ଆସବାବପତ୍ର । କିନ୍ତୁ ମନେହେଉଥିଲା ଏ ଜିନିଷଟା ସେଠି, ସେ ଜିନିଷଟା ଏଠି ଏମିତି କରି କିଏ ନୂଆ ଢଙ୍ଗରେ ରଖିଛି ସବୁ । ଆଉ ଏ ବଦଳଟା ମୋତେ ଭଲଲାଗୁନାହିଁ କାହିଁକି ! ଯେମିତି ମୋତେ ଭଲ ନ ଲାଗିବାପାଇଁ ଏ ବଦଳି ।

ମୁଁ ବାହାରକୁ ଗଲେ ଚପଳାଙ୍କପାଇଁ କିଛି ନା କିଛି ଗୋଟାଏ ଭଲଜିନିଷ ଆଣେ । ଚପଳା ଭଲପାଇଲା ଭଳି ଜିନିଷ ମୁଁ ଆଣୁଥିଲି । ଚପଳା ଭାରି ଖୁସି ହେଇଯାଉଥିଲେ ସେତେବେଳେ । ଏବେ ବି ଆଣେ । କିନ୍ତୁ ଏଟା ଅଭ୍ୟାସବଶତଃ । ଚପଳା ସେଥିରେ ଖୁସି ହୁଅନ୍ତିନାହିଁ ମୁଁ ଜାଣେ, ତଥାପି ଆଣେ ।

ସେଦିନ ବେଶି କିଛି ଆଣିପାରିଲିନାହିଁ । ଦୁଇଟା କମଳା ଲେମ୍ବୁ କିଣି ଆଣିଥିଲି ବାଟରୁ । ଚପଳା ତାକୁ ମୋ ଆଗରେ ଖାଇଲେନାହିଁ । କହିଲେ ପରେ ଖାଇବି । ମୁଁ ପରେ ବୁଝିଲି ସେ ଦୁଇଟିଯାକ ଲେମ୍ବୁ ବିଭୂତିକୁ ଦେଇଛନ୍ତି ।

ମନେହେଲା, ବିଭୂତିକି ମୁଁ କ'ଣ ହିଂସା କରୁଛି କି ?

କାହିଁ– ନାଁ ତ ! ମଣିଷ ଯାହାକୁ ଚାହେଁ, ତାକୁ ଅନ୍ୟ ଜଣେ ନେଇଗଲେ ହିଂସା ହୁଏ, କି ମଣିଷର ଯାହା ଅଛି ତାକୁ ବି କେହି ନେଇଗଲେ ହିଂସା ହୁଏ, କିନ୍ତୁ ନିଜର ଜିନିଷ ବୋଲି ଭାବି ତାକୁ ଯଦି ଆଉ କାହାରିକି ନଦେବାକୁ ମଣିଷ ଚାହେଁ, ସେଇଟା କ'ଣ ହିଂସା ହେବ ନାହିଁ ?

ଆଉ ହିଂସା କରି ଲାଭ କ'ଣ ? ନିଜର କରି ରଖିପାରିବା ଭଳି ଶକ୍ତି ଯା'ର ନାହିଁ— ସେ ପରଠାରୁ ତା ଜିନିଷଟାକୁ ଛଡ଼ାଇ ଆଣିପାରିବ କିମିତି ?

X X X X

ସେଦିନ ଝଡ଼ରାତି । ମୋ ନିଦ ରାତି ଅଧରେ ଭାଙ୍ଗିଗଲା । ଆଉ ଗୋଟାଏ ଝଡ଼ରାତିର ଆଭୋଗ ଆବେଶରେ ଦିହଟା କିମିତି ଉଲସିଉଠୁଥାଏ । ମୋର କ'ଣ ମନହେଲା କେଜାଣି, ମୁଁ ଚପଳାଙ୍କ ଘର ପିଣ୍ଡାକୁ ଉଠିଗଲି । ଚପଳାଙ୍କ ଘରର ଦୁଆର ଖୋଲାଥିଲା । ମୁଁ ପୁଣି ନିହାତି ବୋକାଙ୍କ ଭଳି ତାଙ୍କ ଘର ଭିତରକୁ ଗଲି । ମଶାରି ଟେକି ଦେଖିଲି, ଚପଳା ନାହାନ୍ତି । ମୋର ଟିକିଏ କେମିତି ସନ୍ଦେହ ହେଲା । ମୁଁ ଏଣେ ତେଣେ ଖୋଜିଲି, ପାଇଲିନାହିଁ । ବିଭୂତିଙ୍କ ଘରକୁ ଗଲି— ଦୁଆରଟା ବନ୍ଦ ଥିଲା— ଝିଡ଼ିକି ଦରଜା ସବୁ । ମୁଁ କବାଟ ପାଖରେ କାନ ପାରିଲି । ମୋ ଦେହ ଗୋଟିମତେ ଥରୁଥାଏ । ମୋ ଗୋଡ଼ତଳୁ ଭୂଇଁଟା ଯେମିତି ଖସରିଯାଉଛି ।

କବାଟଟା ଧୀରେ ଧୀରେ ଖୋଲିଲା । ମୁଁ ପଳାଇ ଯିବାକୁ ବସିଲି । କିନ୍ତୁ ମୋର ଶକ୍ତିନଥିଲା ।

ବିଭୂତିବାବୁ କହିଲେ— କିଏ ?

ମୁଁ । —ମୁଁ ଉତ୍ତରଦେଲି ।

ଏତେ ରାତିରେ ଏଠି ?

ଅପା —

ଅପା କ'ଣ ଏଇଠି ଥା'ନ୍ତି ?

ନା— ତାଙ୍କ ଘରେ ନାହାନ୍ତି ।

ଘରେ ନଥିଲେ ଯେ ଏଇଠି ଥିବେ ତୁମକୁ ଏକଥା କିଏ କହିଲା ?

ନାଇଁ— କାଳେ—

ଯାଅ— ତେଣେ ଦେଖିବ !

ମୁଁ ଚାଲିଆସିଲି । ତହିଁ ଆରଦିନ ମୁଁ ଆଉ ଚପଳାଙ୍କ ଆଗକୁ ଯାଇପାରିଲିନାହିଁ— ଚପଳାଙ୍କୁ ମୁଁ ନିଜେ ମୁହଁ ଦେଖାଇପାରିଲିନାହିଁ ।

ମୋର ମନହେଲା— ତାଙ୍କ ଆଗକୁ ଗଲେ, ସେ ଯେମିତି ମୋତେ ଗାଳିଦେବେ— ଅପାତ୍ର, ଅଯୋଗ୍ୟ, ଲଜ୍ଜା ନାହିଁ— ରାତି ଅଧରେ ମୋର ସନ୍ଧାନ ନେଇ ବୁଲୁଛୁ । ଯେତେବେଳେ ଦୁନିଆର ସମସ୍ତ ନିନ୍ଦା ସମସ୍ତ କଳଙ୍କ ଶିରରେ ବହି ମୁଁ ତୋତେ ହାତପାତି ମାଗିଥିଲି— ସେତେବେଳେ, କାପୁରୁଷ ମୋର ନିବେଦନକୁ ଭ୍ରୂକ୍ଷେପ ନକରି ଭୀରୁ ଦୁର୍ବଳ ଭଳି ମୋତେ ଛାଡ଼ି ପଳାଇଲୁ— ଆଜି ପୁଣି କେଉଁ ମୁହଁରେ ମୋର ଗତି ନିରୀକ୍ଷଣ କରୁଛୁ ? ଲଜ୍ଜା ନାହିଁ— ହୀନବୀର୍ଯ୍ୟ ? ନାରୀର ହୃଦୟ ମଧ୍ୟ ବୁଝିପାରିଲୁନାହିଁ ? ପୁରୁଷ ଜନ୍ମ ନେଲୁ କାହିଁକି ? ଦୂର୍ ହୋ ମୋ ଆଗରୁ । ପରିଷ୍କାର କରିଦେ ମୋର ବାଟ ।

ସେଇଦିନ ସଞ୍ଜବେଳେ, ବାବୁ ଡାକି ମୋତେ କହିଲେ— ଭିକାରି, ତମକୁ ଖୋଇ-ପେଇ ବଢ଼େଇକୁଢ଼େଇ ଏଡ଼ୁଟେ କରିଥିଲୁଁ ଏଇଥିପାଇଁ ନାଁ ?

ମୁଁ ଆଶ୍ଚର୍ଯ୍ୟ ହୋଇଗଲି ।

ସେ କହିଲେ— ତମେ ପୁଣି ଏଇୟା କଲ !

X X X X

ବାବୁ କହିଲେ— ସେ ଯାହାହେଉ ତମେ ଏତେ ନିୟମ କଲ, ମୋ ଗୋଡ଼ ଛୁଇଁଲ । ମୁଁ ମାନିଲି । ତମେ ମୋ ପୁଅ ବୋହୂଙ୍କ ନାଁରେ ଜାଣି କିଛି କାହା ଆଗେ ନକହିଛ— ଭଲ ହେଲା । ତମେ ନାଟକ କରିବା ଲୋକ, ତମେ ଘର ଭିତରକୁ ଏତେ ଯିବା ଆସିବା କରିବାଟା ଲୋକଙ୍କ ଆଖିରେ ଭଲ ଦିଶିବନାହିଁ । ତମେ ସେଇ ଆଖଡ଼ା ଘରେ ରହ ।

ହଉ ବୋଲି ଆସିଲି ।

ଏଥର ଚପଳାଙ୍କ ଆଗକୁ ଗଲି । ଏଇ ଶେଷଥର । ଚପଳାଙ୍କୁ ପଚାରିଲି— ଅପା ମୁଁ ଆଖଡ଼ା ଘରକୁ ଯିବି ?

ତମ ଇଚ୍ଛା !.

ମୋ ଇଚ୍ଛା ନୁହେଁ, ବାବୁ କହୁଛନ୍ତି ।

କହୁଛନ୍ତି ତ କରିବ !

ଚାଲିଆସିଲି । ଆଉ କିଛି କହିନାହିଁ ।

ଆଖଡ଼ାଘର ସଫାସୁତାରା ଲିପାପୋଛା କଲି । ଶୁଖିଗଲେ କାଲିଠୁ ଆସି ରହିବି ବୋଲି ସମସ୍ତେ ଜାଣିଲେ ।

ରାତିରେ ମୁଁ ଶୋଇବାକୁ ଗଲି ।

ଶୋଇଲିନାହିଁ— ଖାଲି କାନ୍ଦିଲି । ମୋର ଏ କ'ଣ ହେଲା ? ମୋର ଏ କ'ଣ ହେଲା ? ମୋ ଛାତି ଜଳୁଥିଲା । ଓଃ ବଡ଼ କଷ୍ଟ ! ମୁଁ ବିଛଣାରେ ଆଉ ପଡ଼ି ରହିପାରିଲି ନାହିଁ । ମୋ ଦେହରେ ଯେମିତି ଜର ଭରି ରହିଥିଲା । ମୁଁ ଉଠିଲି । ମୋର ଖଣ୍ଡେ ଲୁଗା ଖଣ୍ଡେ ଗାମୁଛା ଧରିଲି । ଘୋଡ଼ିହେଲା ଖଣ୍ଡକ ଭଲ କରି ଦିହରେ ଜଡ଼ାଇ ନେଲି । ଅଗଣାରେ ଜହ୍ନ ଦୁଲୁକି ଉଠୁଥାଏ । ଫୁଲି ଫୁଲି ହସୁଥାଏ । ମୁଁ ଚାଲିଗଲେ ଏ ଘର ସତେ ଯେମିତି ଏଇମିତି ହସିଉଠିବ !

ଖୁବ୍ ଧୀରେ କବାଟ ଫିଟେଇଲି । ନିଶବ୍ଦ ରାତି । ନିଜର ପାଦଶବ୍ଦ ଶୁଣି ନିଜେ ଚମକିପଡ଼ିଥିଲି । ଆସ୍ତେ ଆସ୍ତେ ପାଦ ପକାଇ ଦାଣ୍ଡକୁ ବାହାରି ପଡ଼ିଲି । ମନହେଲା, ପଛକୁ ଫେରି ଥରେ ଚାହିଁବାକୁ । କାଳେ କେହି ଆସୁଥିବେ, କାଳେ ଚପଳା ଜାଣିବେ । କିନ୍ତୁ ଚାହିଁଲିନାହିଁ । ଚାଲିଗଲି ।

ଆଗରେ— ଯେଉଁଠି ଦିନେ ମୁଁ ଆସି ବସିଥିଲି, ସେଇ ଜାଗାଟା । ସେଇଠିକି ଚାହିଁଦେଲି । ଯେମିତି ସେଠି ଆଉ କିଏ ଜଣେ ବସିଛି ।

ସେଦିନ ଏଇଠି ଆସି ମୁଁ ବସିଥିଲି ଭିକାରି ପରି କ'ଣ ମାଗିବାକୁ, ଶୂନ୍ୟ ହୃଦୟରେ । ଆଜି ମୁଁ ହୃଦୟ ପୂର୍ଣ୍ଣକରି ନେଇ ଯାଉଛି ।

ସେଇଠି, ସେଇଠି, ବସି ଭାବୁଥିଲି— ଏଠି ରହି ମୋର କ'ଣ ହେବ ? ମା ଯା'ର ନାହିଁ ତାର କେଉଁଠି କ'ଣ ହେବ— କିଏ କ'ଣ କରିପାରିବ ?

ଆଜି ତା'ଠାରୁ ଯେମିତି ଆହୁରି ଗୋଟେ ବଡ଼ ଦୁଃଖ ନେଇଯାଉଛି । କିନ୍ତୁ ଏ ଦୁଃଖରେ ମୁଁ ସେ ଦୁଃଖକୁ ଭୁଲିଯାଇନାହିଁ । ମନେହେଉଛି, ଆଜି ହଠାତ୍ ଯେମିତି ସବୁଯାକ ଦୁଃଖ ମିଳି ମୋତେ ମାଡ଼ିବସିଛନ୍ତି । ଏ ଭାରା ଯେମିତି ଅତି ଅସହ୍ୟ ହେଇପଡ଼ିଛି ।

ବାହାରକୁ ଯାଇ ମୁଁ ଶେଷଥରପାଇଁ ଘରକୁ ଟିକିଏ ନଚାହିଁ ରହିପାରିଲିନାହିଁ । କିନ୍ତୁ ଘର ମୋତେ ଫେରିଯିବାପାଇଁ ଟିକିଏ ବି ଅନୁରୋଧ କଲାନାହିଁ । ସେ ଯେମିତି ମୋତେ କହିଲା– ଯା' ଚାଲିଯା– ମନେରଖ, ସବୁ ଜିନିଷ ମାଗି ଆଣିପାରେ– ମାଗି ଆଣି ନିଜର କରି ଆନନ୍ଦ ଉଠାଇପାରେ– ଉପଭୋଗ କରିପାରେ– କିନ୍ତୁ ସେଇ ଗୋଟିକ ଜିନିଷ ଛଡ଼ା ।

କ'ଣ ? ମୁଁ ଯେମିତି ତାକୁ ଆଗ୍ରହରେ ଅନାଇ ରହିଲି । 'ଭଲପାଇବା' ସେ ମୋ କାନ ପାଖରେ, ଚୁପ୍ କରି କହିଦେଇଗଲା ।

X X X X

ବାଟରେ ମୁଁ ନିଜକୁ ନିଜେ ପଚାରିଲି– ଚପଳା ମୋତେ ଛାଡ଼ିଲେ ନା– ଚପଳାଙ୍କୁ ମୁଁ ଛାଡ଼ିଲି ?

ଟ୍ରେନ୍‌ରେ ବସିଲି । ଟ୍ରେନ୍ ଜୋର୍‌ରେ ଛାଡ଼ିଦେଲା । ଗଛପତ୍ର ସେଇ ପରିଚିତ ରାସ୍ତାଘାଟ ସବୁ ଯେମିତି ମୋତେ ଛାଡ଼ି ପଛକୁ ପଳାଉଛନ୍ତି ।

ଜହ୍ନରାତିଟା ତା'ର ଉପରେ ପଡ଼ି ଠୋ– ଠୋ କରି ହସୁଥାଏ ।

X X X X

ଭାବିଲି, ଆଜି କ'ଣ ମୋର ହୃଦୟ ଅଛି ? ଆଜି କ'ଣ ମୁଁ ସେଠୁ ହୃଦୟ ନେଇ ଆସିଛି । ଆଜି କ'ଣ ସେଇ ହୃଦୟରେ ମୋର ଆଘାତ ଅଛି ? ଆଉ କ'ଣ ଏ ହୃଦୟରେ ଆଘାତ ଲାଗିବ ? କ'ଣ ଜାଗା ଅଛି ସେଠି !

ସେଦିନ ଭାବୁଥିଲି, ଚପଳା ମୋ ପାଖରୁ ଚାଲିଗଲେ ମୋର ହୃଦୟକୁ ନେଇ ଚାଲିଯିବେ । କିନ୍ତୁ କାହିଁ, ଚପଳା ତ ମୋ ହୃଦୟଟାକୁ ରଖିନେଲେନାହିଁ !

ସେଦିନ ଭାବୁଥିଲି, ହୃଦୟ ନଥିଲେ ଆଉ ଆଘାତ ଲାଗିବ କେଉଁଠି । କିନ୍ତୁ ଆଜି ଆଘାତଖିଆ ହୃଦୟଟା ଅଛି କି ନାହିଁ ଜାଣିହେଉନଥିଲେ ବି ଡର ହେଉଛି, ତା' ଉପରେ କାଳେ ଆସି ଆଉ ଆଘାତ ବସିବ । ପୁଣି ସାହସ ହେଉଛି, ଏଣିକି ଆଉ ଆଘାତ ବାଧିବନାହିଁ ଯେ !

ହଠାତ୍ ତାଙ୍କ ମୁଦିଟା ଉପରେ ଆଖି ପଡ଼ିଗଲା । ଏଟା ତ ଫେରେଇ ଦେଇ ଆସିଲି ନାହିଁ । କି ଭୁଲ୍ କଲି । କିନ୍ତୁ କେମିତି ଫେରେଇ ଦେଇଥାନ୍ତି, ଫେରେଇ ଦେବାର ସୁବିଧା ନଥିଲା । ଫେରେଇ ଦେଇପାରି ବି ନଥାନ୍ତି । ନଫେରେଇଛି ଭଲ ହେଇଛି । ଗୋଟାଏ ଦାରୁଣ ଆଘାତର ସ୍ମୃତି । ଏ ନଥିଲେ, କାଳେ ସେ କଥାଟାକୁ ଭୁଲିଯିବି ମୁଁ ।

ମୁଁ ସେଦିନ ଭୁଲ୍ ବୁଝିଥିଲି । ମଣିଷ ଦୁର୍ବଳତାକୁ ଘୋଡ଼େଇଦେବାକୁ ବସିଲେ, ପାଉଁଶ ତଳେ ନିଆଁ ଥିଲାପରି ସେ କେତେବେଳେ ପୁଣି ଜଳିଉଠି ଆପଣାର ଅତର୍କିତରେ ଦୁନିଆକୁ ଜାଳିପୋଡ଼ି ପାଉଁଶ କରିଦେବ । ମଣିଷ ଦୁର୍ବଳତାକୁ ଭୁଲିବାକୁ ଯେତେ ଚେଷ୍ଟା କଲେ ବି

ଦୁର୍ବଳତା ମଣିଷକୁ ଭୁଲେନାହିଁ– ବରଂ ମଣିଷର ଗୋଟାଏ ଦୁର୍ବଳତା ଅଛି ବୋଲି ଜାଣିଲେ ମଣିଷ୍ ବୀରପରି ସବୁବେଳେ ତାକୁ ଜୟ କରିବାକୁ ଯତ୍ନ୍ କରନ୍ତା । ତାକୁ ବେଖାତିର୍ କଲେ ସେ ଅଧିକା ବଢ଼େ କି କ'ଣ !

ମୁଁ ମୁଦିଟିକୁ ଚାହିଁଲି । ଦୁର୍ବଳତାଟା ମୋର ମୂର୍ତ୍ତିଧରି ଯେମିତି ସେଇ ମୁଦି ଭିତରେ ରହିଛି । ଏଇ ଦୁର୍ବଳତାଟା ମୋର । ମୁଁ ବେଶ୍ ଦେଖିପାରୁଛି, ଚିହ୍ନିପାରୁଛି– ଏ ଦୁର୍ବଳତାଟା ମୋର । ଏ ଦୁର୍ବଳତାକୁ ମୋତେ ଜଣେ ଦେଇଛି । ଏ ଦୁର୍ବଳତାକୁ ମୁଁ ହଜେଇବି ନାହିଁ– ସେ ବାର ବାର କରି କହିଛି, ଯାକୁ ହଜାଇବନାହିଁ । ନା– ମୁଁ ତାକୁ ହଜାଇପାରିବିନାହିଁ– ମୁଁ ତାକୁ କାହାରିକି ଦେଇପାରିବିନାହିଁ– ଫେରେଇ ଦେବାଟା ତ ଅସମ୍ଭବ । ଏଟା ବାଜେ ମୁଦି ନୁହେଁ– ଏଟା ମନ୍ତ୍ର ମୁଦି ।

ଏ ମୁଦିକି ଦୁଷ୍ମନ୍ତ ଭୁଲିନାହିଁ– ଭୁଲିଛି ଶକୁନ୍ତଳା, ଏ ମୁଦିକି ଶକୁନ୍ତଳା ଆଉ ଦେଖିବନାହିଁ– ଦେଖିବାକୁ ପାଇବନାହିଁ ।

X X X X

କଲିକତାରେ ପହଞ୍ଚିଲି, ତା ପରେ ? କେଉଁଠିକି ଯିବି ? କ'ଣ କରିବି ?

ପାଖରେ ଅଳପ କେତେ ଅଣା ପଇସା ଥିଲା । ସେତକ ଟି.ଟି.ଆଇ. ଦୟାକରି ମୋ ପାଖରେ ରହିବାକୁ ଅନୁମତି ଦେଇଥିଲା । ଓଳିଏ କି ଦି'ଓଳି ଖୁବ୍ ଜୋର୍‌ରେ ଚଳିବ । ତା ପରେ କ'ଣ କରିବି ? ମୁଣ୍ଡ ଘୂରେଇଦେଲା ।

ଚାରିଆଡ଼କୁ ଚାହିଁଲି । ଆମଆଡ଼ ଲୋକ କାହାରିକି ଗୋଟିଏ ଦେଖିଲିନାହିଁ ।

କିଆ ବାବୁ କାହାଁ ଜାଇଏଗା– ଆଇଏ ? ପହୁଞ୍ଚାଦେଁ । ଗୋଟିଏ ରିକ୍‌ସାବାଲା ଡାକିଲା ।

ମୋତେ ଗୋଟାଏ ସାହା ମିଳିଗଲା ପରି ମୁଁ ସେଇ ରିକ୍‌ସାରେ ବସିବାକୁ ଯାଉଥିଲି– ଆଉ ଜଣେ ରିକ୍‌ସାବାଲା କହିଲା– କି ମଶାୟ, କୋଥାୟ ଯାବେନ୍ ? ଏଖାନେଆସୁନ୍ ।

ମୁଁ ଠିଆହୋଇଗଲି । ହଠାତ୍ ଆଉ ଗୋଟିଏ ରିକ୍‌ସାବାଲା ଘରଆଡୁ ବିଜୁଳିପରି ଛୁଟିଆସି ରିକ୍‌ସାଟାକୁ ଏକାବେଳକେ ମୋ ଆଗରେ ଥୋଇଦେଇ କହିଲା–ଆସୁନ୍ ବାବୁ ବସୁନ୍– ଆମି ଲିଏଯାବ– ଠିକ୍ ଜାୟାଗାମେ ପହୁଞ୍ଚାଇଦେବ– ତୁରନ୍ତ ପହୁଞ୍ଚାଇ ଦେବ ଆସୁନ୍ ।

ମୁଁ ଅଗତ୍ୟା ସେଇ ରିକ୍‌ସାରେ ଚଢ଼ିଲି । ସେ ହୁଇପରି ସେଠୁ ଛୁଟି ଚାଲିଗଲା । ଗୋଟାଏ କର୍କଶ ଘଣ୍ଟିକୁ ରିକ୍‌ସା ଗୋଡ଼ରେ ବାଡ଼େଇ ବାଡ଼େଇ ଠକ୍ ଠକ୍ ଝଣ୍ ଝଣ୍ ଶବ୍ଦ କରି ମୋତେ ରିକ୍‌ସା ଉପରେ ଉଠେଇ, ପକେଇ, ନଚେଇ, ସେ କେତେ ଗାଡ଼ି ଘୋଡ଼ା ମଟର କଟେଇ ବାଟ କାଢ଼ି ଚାଲିଯାଉଥାଏ । କିନ୍ତୁ ମୋତେ ଲାଗୁଥାଏ ବାଟ ଯେମିତି ନାହିଁ । ଚାରିଆଡ଼େ ରାସ୍ତା ଯାମ୍ ! ମୁଁ ଯିବି କୁଆଡିକି ?

କିନ୍ତୁ ଏଇ ରିକ୍‌ସାବାଲା– ଯା ପାଇଁ ଯେମିତି ଚାରିଆଡ଼େ ଅବାଧ । ସେ ଚାଲିଛି ଏଇ ଟ୍ରାମ୍ ମଟର ପରି । ସେ କେବଳ ଚାଲିଛି । କିନ୍ତୁ ସେ ନିଜେ ଯେ ଚାଲୁଛି ଏକଥା ଯେମିତି

ତାର ଖିଆଲନାହିଁ । ତାର ଯେମିତି ପ୍ରାଣ ନାହିଁ— ସେ ଯେମିତି କିଛି ଅନୁଭବ କରିପାରୁନାହିଁ । ତା ହୃଦୟରେ କେବେ କେଉଁଠି ଆଘାତ ନାହିଁ କିମ୍ବା ତାର ଏଇ ହାତ ଗୋଡ଼ରେ ବିଣ୍ଡି ବସିଗଲା ପରି ତା ହୃଦୟଟାରେ ବି ବିଣ୍ଡି ବସିଗଲାଣି ବା ତରଳ ହୃଦୟଟା ବସିବାର ନୁହେଁ ବୋଲି ହୃଦୟଟା ଅସରନ୍ତି ଅନୁଭୂତି ହୋଇ ଯେଉଁବାଟେ ବହିଆସେ, ସେଇ ମୁହଁଟା ବନ୍ଦ ହୋଇଯାଇଛି ତା'ର !

ଆପନି କାହାଁ ଯାବେନ୍ ?— ରିକ୍ସାବାଲା ପଚାରିଲା ।

ଇହାଁ— କହି ଓହ୍ଲେଇପଡ଼ିଲି ।

ଦୁଇଅଣା ପଇସା ଦେଲି । ସେ ନାରାଜ ହେଲା । ଆଉ ଅଣାଟାଏ ଦେଲି । ରିକ୍ସାବାଲା ଚାଲିଗଲା । ତା ପରେ— ତା ପରେ ଚାଲିଲି । ଚାଲିଚାଲି ଗୋଡ଼ ଥକି ପଡ଼ିଲା । ମୁଁ ଥକିପଡ଼ିଲି— କିନ୍ତୁ ଏଇ ବିରାଟ କଲିକତାଟା ମୋତେ ଥକିବାକୁ ନାହିଁ । କେହି ମୋତେ ପଦେ କଥା ବି ପଚାରୁନାହିଁ । କାହାରିକି କିଛି ପଚାରିବାକୁ ବି ମୋର ସାହସ ହେଉନାହିଁ ।

ରାସ୍ତାରେ ଜଣେ ଲୋକକୁ ଦେଖିଲି । ଓଡ଼ିଆ ଭଳି ଜଣାଗଲା । ମୁଁ ଡାକିଲି— ଭାଇ, ଟିକିଏ ଶୁଣିବ ?

ମୋ କଥା ଶୁଣି ସେ ବ୍ୟସ୍ତ ହେଲା । ଦୟାକରି ମୋତେ ତା ଘରକୁ ଡାକି ନେଇଗଲା । ସେ ଚଟକଳରେ କାମ କରେ ।

X X X X

ହାଲୁକା ଲାଗିଲା । ଚଟକଳରେ ଅଖାଗାଣ୍ଠିର ଭାରା— ମହଣ ମହଣ ଓଜନ— ଯେମିତି ଢେର୍ ହାଲୁକା । ବଡ଼ିସକାଳୁ ଉଠେ । ଚଟକଳରେ ପେଁକାଳି ବାଜିଲାକ୍ଷଣି ମୁଁ ଅଥୟ ହୋଇପଡ଼େଁ । ମନକଥାଗୁଡ଼ାକ, ପେଟକଥାଗୁଡ଼ାକ, ରାତିକଥାଗୁଡ଼ାକ— ମୁଁ ଭୁଲିବାକୁ ଇଚ୍ଛାକରେନାହିଁ ଯେ ସେ ଆପେ ଆପେ ଭୁଲିହୋଇଯାଏ ।

ଦିନରେ ସାତଣା ମଜୁରୀ । ଭଲ କାମ କଲେ ବଢ଼ିବ । ଏଇ ପେଟପାଇଁ ଯେତେବେଳେ ଖଟି ଖଟି, ଏଇ ପେଟର ମମତାରେ ରକତକୁ ଝାଳ କରି ପଇସା ରୋଜଗାର କରେଁ, ଦିହ ହାତର ପେଶୀଗୁଡ଼ାକ ପେଷିହୋଇ ନିଦା ହୋଇ ଆସେ, ଆଉ ଖୁବ୍ ଧୀରେ ଧୀରେ ମନଟା ହେଇ ଯାଉଥାଏ ହାଲୁକା, ଆଉ ଛାତିଟା— ହୃଦୟଟା— ମୁଁ କହିପାରିବିନାହିଁ— ସେତେବେଳେ ସେ କ'ଣ ହେଇଯାଇଥିଲା । କିନ୍ତୁ ମୋତେ ଲାଗୁଥିଲା, ମୁଁ ଯେମିତି ପେଟକୁ ଚାହିଁ ଚାହିଁ ହୃଦୟଟାକୁ ନିଶ୍ଚିନ୍ତରେ ଉପେକ୍ଷା କରିପାରୁଛି । ଆଉ ଏଇ କଥାଟା ସବୁବେଳେ ମନେପଡୁଥିଲା ।

କିନ୍ତୁ ଖଟଣିରୁ ଫେରି ରାନ୍ଧିବାଢ଼ି ଖାଇସାରି ଯେତେବେଳେ ସଉପ ଖଣ୍ଡେ ପକାଇ, କେତେଦିନର ତେଲଚିକିଟା ଗନ୍ଧ ତକିଆଖଣ୍ଡକ ଉପରେ ମୁଣ୍ଡପକେଇ ଶୋଇପଡେଁ— ସେତେବେଳେ ଭାରି ଜୋର୍‌ରେ ଏଇ ଛାତିଟାରେ ରକ୍ ପୁଣି ଲାଗେ । ତା' ପରେ କେତେବେଳେ ନିଦ ହୋଇଯାଏ ।

କାମଟା ଯେତେବେଳେ ଚାଲିଲା ବୁଲିଲା ପରି ଅଭ୍ୟାସରେ ପଡ଼ିଗଲା— ନୂଆ ଖଟଣିଟା ପୁରୁଣା ହୋଇଗଲା— ସେଇ ନିତି ନିତି ଏକାତାନେ ସମାନ ଭାବରେ ଖଟିଯିବା ଭିତରେ ବି ଛାତିର ଦରଜଟା ଜଣାପଡ଼ିଯାଏ । ସେଇ ଦରଜଟା ଦେହର ଦରଜ ସାଙ୍ଗରେ ବଢ଼ିଯାଏ ଯେମିତି । ବସାକୁ ଆସି ଭାଡ଼ି ଉପରେ ପଡ଼ିଗଲାକ୍ଷଣି ସେ ଦରଜଟା ସଫା ଜଣାପଡ଼େ ମୋତେ ।

ଏଇ କଷ୍ଟଟାକୁ ଭୁଲିବାପାଇଁ ମୁଁ ଦିନେ ବଜାରକୁ ବୁଲିଗଲି । ଫେରୁଥିଲି ସେଇ ବାଟରେ—

ମୁଁ ତାକୁ ଚାହିଁଲି । ସେ ମୋତେ ଚାହିଁ ହସିଦେଲା । ତାର ଛନକା ଆଖିଯୋଡ଼ାକ ଦେଖି ମୋର ମନେହେଲା, ମୁଁ ଯେମିତି କେଉଁଠି ଦେଖିଛି— ଯେମିତି ଅନେକ ଦିନର ଚିହ୍ନା ।

ହଠାତ୍ ମୋର କାହିଁକି ଚପଳାଙ୍କ ରୂପଟା ଚପଳା ପରି ମୋ ଆଖି ସାମନାରେ ଉଭେଇଗଲା । ଭାବିଲି, ନା—ନା, ଏସବୁ ପ୍ରତାରଣା— ଏ ଜାତିକି ବିଶ୍ୱାସନାହିଁ— ଏ କେବଳ ପ୍ରଲୋଭନ ।

କିନ୍ତୁ ଭିତରେ ସେତେବେଳକୁ ଗୋଟାଏ ବିଜୁଳିର ତରଙ୍ଗ ଖେଳିଯାଇଥିଲା ପରି ମୋର କ'ଣ ହେଇଯାଉଥିଲା । ଭାବିବା ଚିନ୍ତିବାର ଶକ୍ତି ନଥିଲା— ସମୟ ବି ନଥିଲା । ଦିହଟାକୁ ମଦଠାରୁ ବେଶି ଘାରିଦେଇଥିଲା— ଅବଶ କରିପକାଇଥିଲା— ଅଳସବୋଧ ହେଉଥିଲା— ମୁଁ ଦୁର୍ବଳ ହେଇପଡ଼ିଲି । ଗୋଡ଼ଟା ସେଇ ଆଡ଼କୁ କିଏ ଯେମିତି ଟାଣି ନେଇଗଲା । ମନେହେଲା, ସତେ ଯେମିତି ଏ ସୁଯୋଗ ଜୀବନରେ ଆଉ କେବେହେଲେ ଆସିବନାହିଁ । ମୁଁ ବି ତାକୁ ଚାହିଁ ଟିକିଏ ହସିଲି । ଅନେକ ଦିନରୁ ଯାହା ଖୋଜୁଥିଲି, ମୋତେ ସତେ କି ସେଇୟା ମିଳିଗଲା । ଏଇଥିରେ କ'ଣ ମୋ ଦୁର୍ବଳତା ଯିବ ? ଏଇଥିରେ କ'ଣ ବଥାଟା ଛାଡ଼ିଯିବ ? ପରୀକ୍ଷା କରିବାରେ ଆପତ୍ତି କ'ଣ ?

ତା ଆଖିଯୋଡାକ ଜଳୁଥାଏ— କହୁଥାଏ— ହଁ, ମୁଁ ଏମିତି ଗୋଟାଏ ମଲମ ଦେବି ଯେ, ତୋ' ବଥାଫଥା ସବୁ କୁଆଡ଼େ ଉଭେଇଯିବ । ହେଇଟି ଦେଖ— ଛୁଇଁଦେଲାକ୍ଷଣି ତୋତେ କେତେ କମ୍ ଲାଗିବ— କେତେ ଉଶ୍ୱାସ ହୋଇଯିବ । ନିରାଶ୍ରୟ ତୁ— ମୁଇଁ ଆଶା, ମୁଇଁ ତୋର ଭରସା— ମୁଁ ଚପଳା ନୁହେଁ— ଚପଳା ପରି ମୁଁ ହୋଇପାରେନା । ମୋତେ ବିଶ୍ୱାସ କର— ମୋତେ ଆପଣାର କର— ଦେଖିବୁ, କେଡ଼େ ସୁଖ ତୋର ସବୁ ଦୁଃଖ ଦେଖୁଁ ଦେଖୁଁ ହରିଯିବ କୁଆଡ଼େ ।

ଘରଟି ବେଶ୍ ସଜା ହୋଇଥିଲା । ଗଦି ବିଛଣା । ମୁଁ ବସିଲି, ବାସନାରେ ମହକୁଥାଏ । ସେ ମୋ ପାଖରେ ବସିଲା । ସେ ଯେମିତି ବେଶି ଲାଜକୁଳୀ ହେଇଯାଇଛି । ତାର ଆଖି ତଳକୁ । ହସ ଆହୁରି ଛୋଟ ।

ବାହାରେ ଆଉ ଗୋଟେ ସ୍ତ୍ରୀ କଣ୍ଠ ଶୁଭିଲା— ଆଗ ମାଗିନେ ।

ଏକଥା ଶୁଣିଲାକ୍ଷଣି ମୁଁ ଅଣ୍ଟିରୁ ଗୋଟେ ଟଙ୍କା କାଢ଼ିଲି ଯେମିତି ଲାଜ ତାର ବଢ଼ିଗଲା । ମୁଁ ନିଅ ବୋଲି କହିଲି । ସେ ହାତ ଦେଖାଇଲା । ମୁହଁରେ କିଛି କହିନାହିଁ । ମୁଁ ଟଙ୍କାଟି

ଦେଲି । ସେ ହାତ ଫେରାଇନେଲାନାହିଁ । କେଡ଼େ ଭଦ୍ର ! ମୁଁ ହାତର ଅଳି ବୁଝିପାରିଲି । ଆଉ ଗୋଟିଏ ଟଙ୍କା ଦେଲି । ସେ ଟଙ୍କା ନେଇ ଉଠିଗଲା । ବାହାରେ ଟଙ୍କା ବୋଧହୁଏ ଆଉ କାହା ପାଖରେ ଦେଇ ଚାଲିଆସିଲା ।

ଏଥର ମନେହେଲା ହଠାତ୍ ଯେମିତି ସେ ତା'ର ଲଜ୍ଜାଟାକୁ ବାହାରେ ଧୋଇ ସଫାସୁତୁରା ହୋଇ ଚାଲିଆସିଛି । କିନ୍ତୁ ସେ ସୌନ୍ଦର୍ଯ୍ୟ ତା'ର ନାହିଁ– ବରଂ କେମିତି ଗୋଟାଏ ବୀଭତ୍ସ ପାଲଟିଯାଇଛି । ଯେମିତି ଅତି ପରିଚିତ ହୋଇ ତାର ଗୌରବ ନଷ୍ଟ ହୋଇଗଲା ।

ସେ ଆସି ପାଖରେ ବସିଲା । ସେ ବସିବାରେ ଭଦ୍ରତା ନଥିଲା । ମୁଁ ଗୋଟିଏ ଖିଆଲ୍‌ରେ ତା ପିଠିରେ ହାତ ପକାଇଦେଲି । ସେ ମୋ କୋଳ ଉପରେ ଢଳିପଡ଼ିଲା । ମୁଁ ତା' ମୁହଁଟିକି ମୋ ଛାତି ପାଖକୁ ଉଠେଇନେଲି । ମୋ ମୁହଁ ତା ମୁହଁ ପାଖରେ ରହିବାକୁ ଚାହିଁଲା ।

ଜୀବନରେ ଏ ଅଭିଜ୍ଞତା ନୂଆ । କିନ୍ତୁ ତଥାପି ମୋର ମନେହେଲା ଯେମିତି ଏସବୁ କେଉଁଠି ଶିଖିଥିଲି ଆଗରୁ ।

ତା ଆଖି କାଚଗିଲାସ ଭଳି ନିର୍ମଳ ଥିଲା– ଆଉ ତା ଭିତରେ ଢଳ ଢଳ ହେଉଥିଲା ସତେ ଯେମିତି ରଙ୍ଗିନ୍ ଖୁବ୍ ମିଠା ଦାମିକା ସରାବ୍ । ମୁଁ ତା' ଓଠରେ ଓଠ ଦେଲି । ମନେହେଲା ସେ ଗିଲାସର ଫନ୍ଦ ଯେମିତି ଏଇଠି । ମୁଁ ଖୁବ୍ ଜୋର୍‌ରେ ପିଇବାକୁ ଚେଷ୍ଟାକଲି । ଯେମିତି ପିଇ ପାରିଲିନାହିଁ ସବୁ । ତଣ୍ଟି ପାଖରେ ଅଟକିଗଲା କେତେ କ'ଣ !

X X X X

ମୁଁ ତାକୁ ଛାତି ଉପରେ ଜାକି ଧରିଥିଲି– ଛାତିର ବଥାଟା ଯେମିତି ସତ ସତ ଉଣା ହେଇଯାଉଥିଲା ସେଥିରେ ।

ବାହାରେ ଡାକ ଶୁଭିଲା– ପାର !

ସେ ଉଠିପଡ଼ିଲା । କହିଲା– ଥାଉ, ଆସେଁ ।

ମୁଁ ଆଶ୍ଚର୍ଯ୍ୟ ହେଲି । ମୁଁ ତାକୁ ଛାଡ଼ିଦେବାକୁ ଚାହୁଁନଥିଲି । କିନ୍ତୁ ଛାଡ଼ିଲି । ସେ ଦୁଆର ପାଖକୁ ଯାଇ ଝଞ୍ଜିରି ଖୋଲୁ ଖୋଲୁ କହିଲା– ଆସ ।

ମୁଁ ବୁଝିପାରିଲି । ବାହାରିଗଲି । ଦୁଆର ସେ ପାଖରେ ଜଣେ ଭଦ୍ରଲୋକ ଠିଆ-ହୋଇଥିଲେ । ମୁଁ ତାଙ୍କୁ ନଚାହିଁ ଚାଲିଆସିଲି । ମୋର ତା ପ୍ରତି ହିଂସା ହେଲାନାହିଁ । ସେ ବିଭୂତିବାବୁ ନୁହନ୍ତି । ଏଠି ଚପଳା ବି ନାହାନ୍ତି, ଭିକାରି ବି ନାହିଁ– ବୋଧହୁଏ ସେଇଥିପାଇଁ । ପାର ମୋତେ ବାଟେଇ ଦେବାକୁ ଆସିଲା । ମୁଁ ବିଦାୟ ନେଲି । ସେ କହିଲା– ଆସିବ !

କେଉଁଦିନ ?

କାଲି !– ସେ କହିଲା ।

କେତେବେଳେ ? –ମୁଁ ପୁଣି ପଚାରିଲି ।

ସେ କାହିଁକି ହସିଲା । କହିଲା– 'ଯେତେବେଳେ ଇଚ୍ଛା', କହି ପଳେଇଲା ।

X X X X

ତହିଁ ଆରଦିନ ଆଉ ଗଲିନାହିଁ । ଯାଇପାରିଲିନାହିଁ । ଦୁଇ ଟଙ୍କା ହେଲାନାହିଁ । ଧାର ବି ଖୋଜିଲି, ମିଳିଲାନାହିଁ । ମନ ଛଟପଟ କଲା ।

ପୁଣି ଯେଉଁ ଦିନ ମୂଲ ମିଳିଲା, ସେଦିନ ଗଲି । ସେ ଅଭିମାନ କଲା । ମୁଁ କହିଲି– ଅନେକ କାମ, ଆସିପାରିଲିନାହିଁ ।

ପାଖରେ ମଦ ଥୁଆହୋଇଥିଲା । ମୋତେ ପଚାରିଲା– ଆଜି ରହିବ ? ମୁଁ ପ୍ରଥମେ ଟିକିଏ ଡରିଲି । ତା'ପରେ ମନ ଭିତରେ ଗୋଟାଏ ଲୋଭ ହେଲା– ଆଉ ଆଶା ବି ହେଲା– ସତେ କ'ଣ ଏଠି ଆଶ୍ରୟ ମିଳିବ ?

ମୁଁ ହଁ ଭରିଲି । ସେ ଖାଇବାକୁ ମଗାଇଲା । ଜଣେ ଲୋକ ମୋତେ ତାର ଦାମ୍ ମାଗିଲା । ମୁଁ ଟଙ୍କାଟିଏ ଦେଲି । 'ଆଉ ସିଉକେ ?'' ସେ କହିଲା । ମୁଁ କାଢ଼ି ଦେଲି । ସେ ପଚାରିଲା– ଆଉ ପିଇବାପାଇଁ କିଛି–

ପାର କହିଲା– ଥାଉ ଯା ।

ଆମେ ଦୁହେଁ ଏକାଠି ବସି ଖାଇଲୁ । ଖାଇସାରି ପାର ମଦଆଣି କହିଲା– ଟିକିଏ ଖାଇଲ ।

ମଦ ? ମୁଁ ଡରିଲି । ବୁଝିପାରିଲା । କହିଲା– କିଛି ହେବନାହିଁ । ଖାଅ ସେ ମୋତେ ପିଆଇଦେଲା ।

X. X X X

ମଦ ? ହଁ ମଦ । ମୁଁ ମଦ ଖାଇଛି । କ'ଣ ହେଲା ସେଠୁ ? ମୋ ନିଜ ଦେହକୁ ମୁଁ ଚାହିଁ ଦେଖିଲି– କାହିଁ, ମୋର ତ କିଛି ପରିବର୍ତ୍ତନ ହେଇନାହିଁ । ମୁଁ ଯାହା ଥିଲି ସେଇଆ ଅଛି । ମଦୁଆ ବୋଲି ମୋ ଦେହରେ ତ କେଉଁଠି କିଛି ଲେଖାନାହିଁ । ମୋତେ କାହିଁକି କିଏ ମଦୁଆ ବୋଲି କହିବ ?

କହନ୍ତୁ ମଦୁଆ । ମଦ ଖାଇ ମୋର କ'ଣ ହେଇଛି ? କେଉଁଠି ?– କାହିଁ ? କିଛି ତ ହେଇନାହିଁ । ତେବେ ମୋତେ ମଦୁଆ ବୋଲି ଘୃଣା କରିବ କାହିଁକି ?

ହଁ, ମୁଁ ବି ଦିନେ ମଦୁଆଙ୍କୁ ଘୃଣା କରୁଥିଲି । କିନ୍ତୁ ଆଜି ନିଜେ ମଦଖାଇ ଦେଖିଲି, ମଦୁଆଙ୍କୁ ଘୃଣା କରିବାର କୌଣସି କାରଣ ନାହିଁ । ମଦ ମଣିଷ ଖାଏ । ମଣିଷ ଖାଇବା ପାଇଁ ମଦର ତିଆରି । ମଦ ମଣିଷପାଇଁ– ପଶୁପାଇଁ ନୁହେଁ । ମୁଁ ମଣିଷ । ମୋର ଜୀବନ ଅଛି । ମୁଁ ବଞ୍ଚିଛି । ମୁଁ ମଦ ନଖାଇବି କାହିଁକି ?

ପଇସାର ଅଭାବ ପଡ଼ିଲା । ପାର ପାଖକୁ ଯାଇପାରେନାହିଁ ସବୁବେଳେ । କିନ୍ତୁ ମଦ ଖାଏଁ । ମଦ ଖାଇବାପାଇଁ ବେଶି ପଇସା ଦରକାର ହୁଏନାହିଁ । ଯେଉଁଦିନ ଛାତିଟାରେ ଦରଜ ବେଶୀ ଜଣାପଡ଼େ, ସେଦିନ ଚୁପ୍‌କିନି ଯାଇ ମଦ ଖାଇ ଆସେ । ମଦ ଖାଇ ଦେଖିଲି, ମୁଁ ଅନେକକଥା ଭୁଲିପାରୁଛି । ପରାସଟାକୁ ପାସୋରିପାରୁଛି । ମୋ ଭିତରେ ଯେଉଁ ବାଟ ଦେଇ ବାହାରର ଦୁଃଖକଷ୍ଟଗୁଡ଼ାକ ପଶିଯାଉଥିଲା ସେଇଟା ବହୁତ ଅଳିଆ ଅଲରାରେ ସେ ଭରତିକରି ବନ୍ଧ ପକାଇଦେଇଛି ।

ମଦ ଖାଇଲି । ହଁ, ଖାଇଲି– ଆଉ ଜଣକୁ ଭୁଲିବାପାଇଁ– ଆଉ ଜଣକର ଦେଇଥିବା ଦୁଃଖଟାକୁ ପାସୋରି ଦେବାପାଇଁ– ମନରେ ଧରି ନରଖିବାପାଇଁ– କିନ୍ତୁ ଦେଖିଲି, ଫଳରେ ହେଲା ମୁଁ ନିଜକୁ ନିଜେ ଭୁଲିଯାଉଥିଲି ।

ମଦ ଖାଇବାଟା ଦୁର୍ବଳତା, ସମସ୍ତେ କହିବେ । ହଁ, ହେଇଥିବ । ମୁଁ ବି ମାନୁଛି । କିନ୍ତୁ ସେଇମିତି ଗୋଟେ ଦୁର୍ବଳତାକୁ ଏଡ଼ିବାପାଇଁ ତ ମୁଁ ମଦ ଖାଇଲି । ବିଷକୁ ବିଷର ଔଷଧ କଲି । କିନ୍ତୁ ପାରୁଛି କି ?– ମଦ ଖାଇ ମୋର ଦେହ– ମନ– ହୃଦୟ ସବୁ ସବଳ ହୋଇଯାଉଛି କି ?

ମୁଁ ଦେଖିଲି, ମଦ ଖାଇବା ପରେ ନିଜ ଉପରେ ମୋର ବିଶ୍ୱାସ କମିଯାଇଛି । ନିଜ ଉପରେ ଆଉ ଭରସାନାହିଁ– ମଦ ଖାଇ ମୋର ଏତିକି ହେଇଛି । ଏମିତି କି ମୋ ଗୋଡ଼ ମୋ ବୋଲ କରୁନାହିଁ– ମୋ ହାତ ମୋ କଥା ମାନୁନାହିଁ । ଏଇ ସାମାନ୍ୟ ବିଶ୍ୱାସ ଟିକକ ବି ଚାଲିଗଲା ମୋ ଉପରୁ ।

ମୁଁ ଭରସା ଖୋଜିଲି । ଆଶ୍ରା ଖୋଜିଲି । ମୋତେ କିଏ ସମ୍ଭାଳିବ ? ମୋ ଭାର କିଏ ନେବ ? ପାର ?

ପାର ପାଖକୁ ଗଲି । ପଇସା ନଥିଲା । ପାର ତୁଣ୍ଡରେ ମନାକରିନାହିଁ, ସେ ବୁଢ଼ୀଟା ମନାକଲା । କିନ୍ତୁ ପାର ତାକୁ କିଛି କହିଲାନାହିଁ । ପାର ମୋତେ ଡାକିଲାନାହିଁ, ପାର ମୋତେ ରହ ବୋଲି କହିଲାନାହିଁ ।

ମୁଁ ଚାଲିଆସିଲି । ରାଗିଲି । ଦିନେ ପଇସାନାହିଁ ବୋଲି ମୋତେ ଫେରାଇ ଦେଲା । ଠିକ୍ କଲି, ଆଉ ତା' ପାଖକୁ ଯିବିନାହି; କିନ୍ତୁ ଯିବି– ଯେଉଁଠିକି ହେଲେ ଯିବି– ଆଜି ନିଶ୍ଚୟ ଯିବି । ମୁଁ ଗଲି । ମୋ ସାଙ୍ଗରେ ଯେଉଁ ଲୋକଟି ଥିଲା, ତା'ରି ପେଟରା ଭାଙ୍ଗି ଟଙ୍କା ଆଣିଲି ।

ହଁ, ଚୋରିକଲି । ଏ ଚୋରି, ଚୋରିନୁହେଁ । ମୁଁ ଚୋରିକରିବା ଉଦ୍ଦେଶ୍ୟରେ ଚୋରିକରିନାହିଁ । ଗୋଟାଏ ରାଗ ଜୋରରେ ମୁଁ ୟା' କଲି । ସେ ରାଗଟା ମୋ ଦେହକୁ ଚଞ୍ଚଳ କରୁଥିଲା– ସେ ରାଗଟା ଜିଦି ଆଣି ଦେଉଥିଲା– ସେ ରାଗଟାରେ ଛାତି ପୋଡୁ ନଥିଲା– ସେ ରାଗଟାରେ ମନ ଜଳୁନଥିଲା । ସେଥିପାଇଁ ସେଇ ରାଗ ନହସରେ ଯାହାକଲି ସେଟା ଅନ୍ୟାୟ ନୁହେଁ ।

ଗୋଟାଏ ନୁହେଁ, ଦୁଇଟା ନୁହେଁ– ପଇସା ହାତରେ ଥିଲେ ଯାହା ପାଖକୁ ଇଚ୍ଛା ହେଲା, ଗଲି । ମୋର ମନେହେଲା, ଏଇ ନିତି ନିତି ନୂଆ ନୂଆ ସଂଭୋଗରେ ମୋର ସେଇ ଦୁର୍ବଳତା, ସେଇ ହୃଦୟଟାକୁ ମୁଁ ଯେମିତି ଗଡ଼ ଗଡ଼ କରି କାଟି ପକେଇଦଉଚି । ଏଣିକି ମୁଁ ଭଲହୋଇଯିବି । ମୋର ମନେହେଲା ମୁଁ ସବଳ ହେଇଯାଉଛି ।

ସମସ୍ତେ ଶୁଣନ୍ତୁ– ସମସ୍ତେ ଜାଣନ୍ତୁ– ମୁଁ ମଦୁଆ– ମୁଁ ବେଶ୍ୟାସକ୍ତ । ତା ସଙ୍ଗେ ସଙ୍ଗେ ସମସ୍ତେ ବୁଝନ୍ତୁ– ମୁଁ ୟା କଲି କାହିଁକି ? ନବୁଝି ଯଦି କେହି ହସେ, ହସୁ; ସେ ହସିବାର

ମୂଲ୍ୟ କିଛି ନାହିଁ । ନବୁଝି ନସୁଝି ଯେଉଁ ସମାଜ ଏମିତି ହସେ, ସେ ମୂର୍ଖ ସମାଜ । ତାର ସେ ହସିବାର ମୋର ଯାଏ ଆସେ କେତେ ?

ଏ ଜଗତଟା ସେ ସମାଜର ବାହାରେ– ସେଥିପାଇଁ ମୁଁ ଯା ଭିତରେ ପଶିଲି ।

ଏ ଦୁନିଆଟା ଧର୍ମର ଧାର ଧାରେନାହିଁ– ସେଥିପାଇଁ ମୁଁ ତାକୁ ଧରିଛି ।

ଏଠି କେହି କାହାର ଦୟାର ଆଶ୍ରିତ ନୁହେଁ– ସେଥିପାଇଁ ମୁଁ ଏଠାରେ ଆଶ୍ରୟ ନେଲି ।

ଏଠି ପ୍ରବଞ୍ଚନା ନାହିଁ– ମିଥ୍ୟା ନାହିଁ– ମହାକାଳ ଫଳ ନାହିଁ । ଏଠି ଡର ନାହିଁ– ଭୟ ନାହିଁ– ଲୁଚା ନାହିଁ, ଛପା ନାହିଁ । ସେଥିପାଇଁ ଏ ପୃଥିବୀକୁ ମୁଁ ଏତେ ଭଲପାଇଲି । ଆଉ ଭଲ ପାଇ ଦେଖିଲି, ମୁଁ ନିଷ୍କପଟ– ତେଣୁ ନିଷ୍କଳଙ୍କ । ମୋତେ ରାଣ୍ଡୁଆ ମଦୁଆ ବୋଲି କେହି କହିଲେ ବି ମୁଁ ଆଜି ଜୋର୍‌ଦେଇ କହିପାରିବି– ହଁ, ମୁଁ ରାଣ୍ଡୁଆ ମଦୁଆ– ମୁଁ ମଦୁଆ । ରାଣ୍ଡୁଆ ମଦୁଆ ହେବାରେ ଯେଉଁ ଆଶ୍ୱାସନା, ସେ ଆଉ କେଉଁଠି ମିଳିବ ?

ତଥାପି ବେଳେ ବେଳେ ମୋ ମନରେ ପ୍ରଶ୍ନଉଠେ– ପ୍ରକୃତରେ କ'ଣ ମୁଁ ଆଶ୍ୱାସନା ପାଇଛି– ଆଶ୍ରା ପାଇଛି– ପ୍ରକୃତ ଭଲ ପାଇବାର ରୂପ କ'ଣ ଏଇ ?– ମୁଁ କ'ଣ ସତ ସତ ମୋର ଦୁର୍ବଳ ଭଲପାଇବା– ଦୁର୍ବଳ ହୃଦୟଟାରେ ନିଆଁ ଲଗେଇଦେଇ ଏଠି ଗୋଟାଏ ସବଳ ହୃଦୟର ସନ୍ଧାନ ପାଇଛି ?

ପୁଣି ମୁଁ ହସିଉଠେ– ଦୁର୍ବଳତାର ପ୍ରତୀକ ଏଇ ହୃଦୟ ପୁଣି ସବଳ ହେବ କେମିତି ? ମୁଁ ନିଜକୁ ପରିହାସ କରି କହେ– ହୃଦୟ, ଭଲପାଇବା, ଇଆ ଭଳି ପ୍ରବଞ୍ଚନା ଆଉ ଦୁନିଆରେ କ'ଣ ଅଛି ?

ମୁଁ ସେ ପ୍ରବଞ୍ଚନାପୂର୍ଣ୍ଣ ଦୁନିଆ ମାୟାର ସଂସାରକୁ ଛାଡ଼ିଆସିଛି । ମୁଁ ଆଜି ଯାହା ପାଇଛି ସେ ସତ୍ୟ ।

ଏଠି ଖାଲି ଦିଆ କି ଖାଲି ନିଆ ଚାଲିନାହିଁ । ଏଠି କେବଳ ଦାନ କରି କେହି ସୁଖ ପାଏନାହିଁ– ବିନା ପ୍ରତିଦାନରେ ଏଠି କିଛି ହୁଏନାହିଁ– ଏଇଟାଇ ଦୁନିଆର ଆଦିମ ସତ୍ୟ । ଏଠି ଦିଆ ଚାଲେ– ନିଆ ଚାଲେ । ଯେତେ ନବ ସେତେ ଦବ– ଖୋଲା କଥା । ଗୋଟାଏ ଆଦର୍ଶର କଳ୍ପନାକୁ ଆଖିଆଗରେ ଥୋଇ ଗୋଟାଏ ମାଟି ପ୍ରତିମାର ପୂଜା ଏଠି ହୁଏ ନାହିଁ । ଏଠି ପୂଜା ପାଆନ୍ତି ଭୋକିଲା ଭଗବାନ– ଜୀଅନ୍ତା ମଣିଷ । ସେ ଖାଏ– ସେ ଖାଇବାକୁ ମାଗେ– ପାଣିଛଡ଼ାଇ ହାତ ଠୋ ଠା କରି, ଭୋଗ ଦେଇ ପୁଣି ଠା ଉଠେଇ ନେଇ ଆସିଲେ ସେ ସନ୍ତୁଷ୍ଟ ହୁଏନାହିଁ । ନିଷ୍କାମ ପୂଜାକୁ ସେ ହସେ– ମିଛ ଧୂଳିଘର,– ଖେଳନା ବୋଲି– ଭଣ୍ଡାମି ଠକାମି ପ୍ରବଞ୍ଚନା କହି ସେ ହସି ଏକାବେଳକେ ଉଡ଼ାଇଦିଏ ।

ମଣିଷ ଆନନ୍ଦ ଚାହେଁ– ସୁଖ ଚାହେଁ– ଭୋଗ ଚାହେଁ– ଆରାମ ଚାହେଁ– କାରଣ ମଣିଷ ଦେହ ବହିଛି– ମଣିଷର ବାସନା ଅଛି– ଏଠି ତ୍ୟାଗର ପ୍ରଶ୍ନ ଉଠେନାହିଁ । ଯେ ଉଠାଏ ସେ ପାଗଳ । ହକ୍ ଦାବି ଉପରେ ଏଠି ସବୁ ଜିନିଷ ଠିଆହୋଇରହିଛି । ପ୍ରତିଦାନର ପ୍ରତିଆଶା ନରଖି ଏଠି କେହି ପୂଜା କରେନାହିଁ– ସେଥିପାଇଁ ଏଠି କେହି କାହାକୁ ଠକେଇବାର ସୁଯୋଗ ବା ସୁବିଧା ପାଏନାହିଁ ।

ଏଠି ଦୟା ନାହିଁ, ମାୟା ନାହିଁ, ମୁଲାଇଜା ନାହିଁ, ଏଠି ବଡ଼ ସାନ ଭେଦ ନାହିଁ । ଏଠି ସମାନ ସମାନର କାରବାର । ସେ ଛୋଟ ହେଉ, ବଡ଼ ହେଉ, ଏ ସ୍ତରକୁ ନ ଉଠିଲେ ବା ନଖସିଲେ ଏ ରାଜ୍ୟରେ କେହି ପ୍ରବେଶ କରିପାରିବନାହିଁ ।

ଏଠି ହିଂସା ନାହିଁ, ଦ୍ୱେଷ ନାହିଁ, ଯା'ର କ୍ଷମତା ଅଛି ସେ ଉପଭୋଗ କଲା । ଯେତିକି କ୍ଷମତା ଅଛି ସେତିକି ଉପଭୋଗ କଲା । ସମସ୍ତଙ୍କର ଏଠି ସମାନ ଅଧିକାର । ସମସ୍ତଙ୍କପାଇଁ ଏ ସ୍ୱର୍ଗର ଦ୍ୱାର ସମାନ ଭାବରେ ମୁକ୍ତ । ଏଠି ଭଲ-ମନ୍ଦ, ଧାର୍ମିକ- ପାପୀ, ଭଦ୍ର-ଅଭଦ୍ର ବିଚାରନାହିଁ । ଏଇ ତ ସ୍ୱର୍ଗ— ଏଇ ତ ମୁକ୍ତି ।

କିନ୍ତୁ ତଥାପି— ସତ କହିବି ? — ଛାତିରେ ସେଇ ଯେଉଁ ପବନ ଅଟକିଗଲା ପରି ଲାଗେ— ବେଳେବେଳେ ସେ ବଡ଼ କଷ୍ଟ ଦିଏ । ଏ ସତ ଦୁନିଆରୁ ପଳାଇଯିବାକୁ ମନହୁଏ । ଯେମିତି ମିଛ ଦୁନିଆର ପ୍ରବଞ୍ଚନା, ଦୁଃଖଯନ୍ତ୍ରଣାରେ ବି ଗୋଟାଏ ଉପଭୋଗ କରିବାର କଣ ଅଛି । ସେ ମିଛ ଦୁନିଆକୁ ମୁଁ ଖୋଜେ— କିନ୍ତୁ ପାଏନାହିଁ । ସେ ଦୁନିଆକୁ ମୁଁ ଛାଡ଼ି ଚାଲିଆସିଛି— ସେ ଦୁନିଆ ଆଖିରେ ମୁଁ ମରିଯାଇଛି । ଆଜି ମୋର ଯେଉଁ ରୂପଟା ସେ ଦୁନିଆପାଇଁ ବେଳେ ବେଳେ ବାଇହୋଇ ବୁଲୁଛି, ସେ ପ୍ରକୃତ ମୁଁ ନୁହେଁ— ସେଟା ମୋର ଭୂତ— ମୋର ପ୍ରେତ ।

ସେ ଦୁନିଆ ପାଇଁ ଯେତେ ମୋର ମନ ଗୁଡ଼େଇହୁଏ ମୁଁ ସେତିକି ଶକ୍ତିରେ ଏ ଦୁନିଆକୁ ଆବୋରି ବସେ । ମଦ ଖାଏ— ବେଶ୍ୟା ଘରକୁ ଯାଏ ।

କଷ୍ଟ ହେଉଥିଲା ବେଳେ ନିଶା ଖାଇଦେଲେ ଯେମିତି କଷ୍ଟ ଜଣାଯାଏ ନାହିଁ; କିନ୍ତୁ କଷ୍ଟଟା ଥାଏ, ନିଶା ଛାଡ଼ିଗଲେ ସେ କଷ୍ଟଟା ଅବଶ ଦେହଟାକୁ ଯେମିତି ଆହୁରି ଅହନ୍ତାରେ କାମୁଡ଼ିବସେ, ନିଶା ଖାଇ, ବେଶ୍ୟାଘରକୁ ଯାଇ ମୋର ଠିକ୍ ସେମିତି ହେଲା । ବେଶ୍ୟାଘରୁ ଚାଲିଆସିଲେ, ନିଶା ଛାଡ଼ିଗଲେ, ମୋର ଭାରି କଷ୍ଟ ହୁଏ ।

ସେଥିପାଇଁ ଅନବରତ ନିଶା ଖାଇଲି— ସବୁବେଳେ ବେଶ୍ୟା ଘରେ ପଡ଼ିଲି ।

X X X X

କେତେ ଅପରିଚିତା । ମୂହୂର୍ତ୍ତକର ପରିଚୟରେ କେତେ ପରିଚିତ ହୋଇଯାନ୍ତି— ସେହି ମୁହୂର୍ତ୍ତକପାଇଁ । ଏହି ମୁହୂର୍ତ୍ତର ମୂଲ୍ୟ କିଏ ଦେବ ! ଏଇଭଳି ଲକ୍ଷ ଲକ୍ଷ ମୁହୂର୍ତ୍ତ ସର୍ଜନା କରି ମୁଁ ଅତୀତକୁ ଆଘାତ କରୁଥିଲି ।

X X X X

କେତେ ପାର— ମୋରି ଛାତି ଉପରେ ଧରିରଖିଛି— ତାଙ୍କର କୋମଳ ଅଙ୍ଗକୁ ରାକ୍ଷସ ଭଳି ଭିଡ଼ିଧରିଛି ।

ଦେହରେ ପ୍ରବଳ ଉତ୍ତେଜନା— ଶରୀରଟା ଉତ୍‌କ୍ଷିପ୍ତ— ମସ୍ତିଷ୍କ ଉନ୍ମତ୍ତ— ରକ୍ତ ଉଷ୍ଣ— ଧମନୀରେ ତାର ପ୍ରବାହ ଭୀଷଣ— ପ୍ରଖର ।

ସବୁ ଭୁଲିଯାଏ । ମୁହୂର୍ତ୍ତକପାଇଁ ସବୁ ବ୍ୟଥା ହରିଯାଏ କୁଆଡ଼େ । ଗୋଟାଏ ବୈଦ୍ୟୁତିକ ପ୍ରବାହରେ ସବୁ ଆରୋଗ୍ୟ ହୋଇଯାଏ ।

ଆହୁରି ଲୋଭ ହୁଏ । ସେ ଉତ୍ତେଜନାକୁ ବାରମ୍ବାର ଉଦ୍ରେକ କରିବାକୁ ମନହୁଏ– ତାକୁ ପ୍ରଶମିତ ହେବାକୁ ଛାଡ଼ିଦିଏନାହିଁ । କିନ୍ତୁ ଦେହ ଅବଶ ହେଇ ଆସେ । ଶରୀର ଶକ୍ତି ଅବାଧ ହୁଏ । ସେଥିପାଇଁ ମଦ ଖାଏ । ଦେହକୁ ଆପାତତଃ ପ୍ରେରଣା ଦିଏ । ମୁଁ ଆଗପଛ ନଭାବି ପାଗଳଙ୍କ ପରି ଛୁଟିଥାଏ– ଦେହର ବାକି କଣ କେଉଁଠି ରହିଗଲା ତା'ରି ସନ୍ଧାନରେ– ଦେହଟାକୁ ନିଃଶେଷକରି ଭୋଗ କରିବାପାଇଁ– ଖାଲି ହୃଦୟ ଉପରେ ଅଭିମାନ କରି– ହୃଦୟକୁ ହିଂସାକରି ହୃଦୟକୁ ଧ୍ୱଂସ କରିବାର ଜଣାଶୁଣା ଅଜଣା ଖିଆଲରେ ।

X X X X

ସେଦିନ ଜଣକ ଘରକୁ ଯାଇଥିଲି । ସେଠି ଜଣେ ଗ୍ରାମୋଫୋନ କମ୍ପାନୀର ଲୋକ ଥିଲା । ସେ ଗୀତ ଶୁଣୁଥିଲା । ତବଲା ବଜାଇବା ଲୋକର ଅଭାବ ଥିଲା । ମୁଁ ଠିକ୍ ସେତିକିବେଳେ ପହୁଞ୍ଚିଗଲି । ସେଠି ସାମିଲ୍ ହୋଇଗଲି । ମୁଁ ତବଲା ବଜାଇଲି– ଗାଇଲି । ସମସ୍ତେ ମୁଗ୍ଧ । ତା ପରଠୁଁ ଗ୍ରାମୋଫୋନ୍ କମ୍ପାନୀର ଆର୍ଟିଷ୍ଟ ମୁଁ । ମଲ୍ଲୀର ମୋର ସାଙ୍ଗ ହୋଇ ରେକର୍ଡରେ ଗୀତ ଦେଉଁ ।

ହୁଁ– ସ୍ୱାଭାବିକ । ମଲ୍ଲୀର ମୋର ଟିକିଏ ଘନିଷ୍ଠତା ଆସିଲା । ମୁଁ ଯାଇ ତା'ରି ଘର ପାଖରେ ଘର କରି ରହିଲି । ପଇସା ହଜିଲା ବୋଲି ମୋ ସାଙ୍ଗ ତା' ଘରୁ ମୋତେ କାଢ଼ି ଦେଲା ।

ମଲ୍ଲୀ ମୋ ପାଖରେ ଥାଏ– ପିଆଲା ମୋ ହାତରେ ଥାଏ– ଆଉ ଥାଏ ଗୀତ ।

ଟଙ୍କାର ମୋର ଅଭାବ ନାହିଁ । ଆଉ ଚଟକଳକୁ ଯାଏନାହିଁ ମୁଁ । ଏବେ ରେଡ଼ିଓରୁ ବି ଡାକରା ଆସେ ।

ମୁଁ ଖୁବ୍ ସୁଖୀ । ମୋର ପଇସା ଅଛି– ମୋର ମଲ୍ଲୀ ଅଛି– ମୋର ମଦ ଅଛି– ମୋର ସବୁ ଅଛି । ମୋର ଆଉ ଲୋଡ଼ା କ'ଣ !

ସେଦିନ ମଦ ପିଉଥିଲି । ମଲ୍ଲୀର ଡାହାଣ ଜଙ୍ଘ ଉପରେ ମୋର ବାଁ କହୁଣି ରଖି, ସେଇ ହାତ ପାପୁଲିରେ ଗଣ୍ଡ ଭରାଦେଇ ଡାହାଣ ହାତରେ ମଦ ଗିଲାସଟା ଉଠଉଥିଲି । ଆଗରେ ବଡ଼ ଦର୍ପଣଟା– ମୋ ମୁହଁ ଦିଶୁଥାଏ– ମଦ ଗିଲାସରେ ମଦଟା ଢଳଢଳ କରୁଥାଏ । ସେ ଭାରି ସୁନ୍ଦର । ଦର୍ପଣରେ ମୁଁ ଦେଖାଯାଉଥାଏ । କାହିଁ, ମୁଁ ତ ଆଗଭଳି ଆଉ ସୁନ୍ଦର ନାହିଁ । ଯେଉଁଦିନ ପ୍ରଥମେ ମଦ ଖାଇଲି ସେଦିନ ମୁଁ ସୁନ୍ଦର ଥିଲି– ମଦଠାରୁ ଢେର୍ ସୁନ୍ଦର ଥିଲି ଯେମିତି । ସେଥିପାଇଁ ସେଦିନ ମଦ ମୋତେ ଚାହୁଁଥିଲା । ଆଜି ମଦ ମୋଠାରୁ ସୁନ୍ଦର ହୋଇଯାଇଛି–ନା–ନା, ମୁଁ ମଦଠାରୁ ଅସୁନ୍ଦର ହୋଇ ଯାଇଛି– ଅତି କଦର୍ଯ୍ୟ ଜଘନ୍ୟ ଦେଖାଯାଉଛି– ସେଥିପାଇଁ ମୁଁ ଆଜି ମଦକୁ ଚାହୁଁଛି । ସେଦିନ ମୁଁ ମଦକୁ ଛାଡ଼ି ଚାଲିଗଲେ ବି ମଦ ମୋତେ ଛାଡ଼ିପାରୁନଥିଲା । କିନ୍ତୁ ଆଜି ମଦ ମୋତେ ଛାଡ଼ିଗଲେ ମୁଁ ତାକୁ ଛାଡ଼ିପାରୁନାହିଁ । ସେଦିନ ଯେମିତି ମୁଁ ମଦ ଖାଉଥିଲି– ଆଉ ଆଜି ମଦ ମୋତେ ଖାଉଛି ।

X X X X

ଦିହ ଭାଙ୍ଗିପଡ଼ିଲା । ସମସ୍ତେ କହିଲେ ତୁ ରୋଗା ଦିଶୁଛୁ– ତୋ ଦିହ ଭଲନାହିଁ– ଦିହ ପ୍ରତି ଯତ୍ନ ନେ । ଯେଉଁ ପ୍ରଶ୍ନରେ କିଛି ମୂଲ୍ୟ ନାହିଁ– ଯେଉଁ ସହାନୁଭୂତି ନୁଖୁରା, ମୋତେ ସେଗୁଡ଼ାକ ଭଲ ଲାଗେ ନାହିଁ । ମୋ ପ୍ରତି ଏହି ଅନୁକମ୍ପା– ଏହି ଦୟା, ବିଶେଷତଃ ଯାହା ସହିତରେ ମୋର କିଛି ସ୍ୱାର୍ଥ ନାହିଁ, ସେଇମାନଙ୍କର ମୋ ପ୍ରତି ମୌଖିକ ସହାନୁଭୂତି– ଭୂତ ଭଳି ମିଛ ହେଇ ମୋ ଆଗରେ ଠିଆହୋଇଯାଏ । ମୁଁ ଡ଼ରେ ।

ଦିହଟା ବସି ଆସିଲାଣି । ମୁଁ ବୁଝିଛି, ଭିତରଟା କ୍ରମେ କ୍ରମେ ଫାଙ୍କା ହେଇଯାଉଛି । ଖାଲି ଦେହ ନୁହେଁ– ଦେହ– ମନ– ପ୍ରାଣ ସବୁ । ଚିନ୍ତା କ'ଣ ? ଦୁଃଖ କ'ଣ ? ମୋର ଦେହ, ମୁଁ ତାକୁ ଯେମିତି ଇଚ୍ଛା ଯେମିତି କ୍ଷୟ କରିବି– ମୋର ମନ, ମୋ ଖୁସିରେ ମୁଁ ତାକୁ ଉଡ଼େଇଦେବି– ମୋର ହୃଦୟ, ମୁଁ ତାକୁ ମୋ ବିଚାରରେ ଯେଉଁ ଶାସ୍ତିହେବ ସେଇ ଶାସ୍ତି ଦେବି । ଯେଉଁଥିରେ ମୋର ଅଧିକାର, ସେଥିରେ ଆଉ କାହାରି ଦାବି ସାବ୍ୟସ୍ତ କରିବାକୁ ଦେବିନାହିଁ ।

ମୋତେ ଲୋକେ ଯେତେ କହିଲେ, ମନାକଲେ– ମୁଁ ସେତେ ବେଶି ମଦ ପିଇଲି । ସେତେ ବେଶି ଦେହକୁ ଭୋଗ କରିବାର ସାମଗ୍ରୀ ଯୋଗାଇଲି । ମୋର ମନେହେଲା, ଲୋକେ ମୋର ସୁଖ ଦେଖି ସହିନପାରି ହିଂସାରେ ମୋତେ ଏମିତି କହୁଛନ୍ତି– ଯେମିତି ମୋର ଦୁର୍ବଳତାଟା ବଢ଼ିଯିବ । ନା– ମୁଁ କେଉଁ ଶୁଣିବିନାହିଁ– ମୁଁ ଶୁଣିଲି ବି ନାହିଁ । ମୋର ମଦ– ମୋର ମଲ୍ଲୀ ।

ସେଦିନ ମୁଁ ଶୋଇଥିଲି ମଲ୍ଲୀ କୋଳରେ ମୁଣ୍ଡଦେଇ । ମଲ୍ଲୀର ଫୁଟିଲା ମୁହଁଟି ସଦ୍ୟ ସଜଫୁଲପରି ଦିଶୁଥିଲା । ମୁଁ ମୋର ଲାଳସୀ ହାତକୁ ନେଇ ତା ଗଣ୍ଡରେ ମାଇଲି । ସେ ତାର ତୁଳାପରି ପାପୁଲି ଦୁଇଟିରେ ମୋହାତକୁ ଧରି ମୋର ପୁରୁଷ ହାତର ଆବୁଡ଼ା ଖାବୁଡ଼ାକୁ ସମାନ କରିଦେଇଥିଲା, ତାର ଛାତି ଉପରେ ରଖି ।

ଏ ମୁଦିଟି ଭାରି ସୁନ୍ଦର ହେଇଛି,– ମଲ୍ଲୀ କହିଲା ।

ମଲ୍ଲୀ ମୋ ଆଙ୍ଗୁଠିରୁ ମୁଦିଟି କାଢ଼ିନେଇ ନିଜ ଆଙ୍ଗୁଳିରେ କଷି ପିନ୍ଧିଲା ।

କହିଲା– ଏଟା ମୁଁ ନେଲି ।

ନାଇଁ ମଲ୍ଲୀ– ମୁଁ ମନାକଲି ।

ଓ– ଏଟା ତମ ତା'ରି ବୋଧହୁଏ ?

ହଁ, ଏଟା ତା'ରି,– ତାରି ସ୍ମୃତି ।

କାହାର– କାହାର ?

ତୁ କହିଲୁ କାହାର ହୋଇଥିବ ?

ମୁଁ ଏବେ ଜାଣିବି କେମିତି ଲୋ ମା ? ତମେ କାହାକୁ ଭଲପାଉଛ ?

କାଲି ତାକୁ ଭଲପାଇଥିଲି, ଏତିକି ନୁହେଁ– ମୋତେ ବି ସିଏ ଭଲପାଉଥିଲା ।

କିଏ ସେ ?

ମଲ୍ଲୀ, ତୁ କ'ଣ ମୋତେ ଭଲପାଉନା ?

କିଜାଣି ସେ କଥା ତମେ ଜାଣିଥିବ ।

ତେବେ, ଏଟା ତୋରି ସ୍ମୃତି ନହେବ କାହିଁକି ?

ମୁଁ ତ ଦେଇନାହିଁ ଯାକୁ– ଯିଏ ଦେଇଥିବ ସେ କେଡ଼େ ସୁନ୍ଦର ହେଇଥିବ !

ହଁ, ସୁନ୍ଦର–

ସେ ଖୁବ୍ ସୁନ୍ଦର,– ନୁହେଁ ?

ହଁ, ଖୁବ୍ ସୁନ୍ଦର ।

ସେ ତମକୁ ଖୁବ୍ ଭଲପାଏ –ନା ?

ହଁ, ଖୁବ୍ ଭଲପାଏ ।

ଆଉ ତମେ ?

ହଁ, ହଁ, ମୁଁ ତାକୁ ଖୁବ୍ ଭଲ ପାଉଥିଲି– ମଲ୍ଲି ! ଆଉ ଭଲ ବି ପାଉଛି । ଏଇଟା ତା'ରି ସ୍ମୃତି । ତୁ ସେଟା ନେ ନା– ମୁଁ ଭୁଲିଯିବି । ସତର ସଂସାରଟାକୁ ପରଖିବାପାଇଁ ଗୋଟାଏ ମିଛ ସଂସାରର ନମୁନା ତ ପୁଣି ରହିବା ଦରକାର । ହଁ, ମଲ୍ଲୀ– ମୁଁ ତାକୁ ଖୁବ୍ ଭଲପାଉଥିଲି– ତା'ରିପାଇଁ ଆଜି ତୋତେ ଭଲପାଇଛି– ସେଇ ମୋତେ ଭଲପାଇବା ଶିଖେଇଛି ।– ମୁଁ ଏଗୁଡ଼ାକ ମନେ ମନେ ଭାବୁଥିଲି କି ତାକୁ କହିଲି, ମୋର ମନେପଡୁନାହିଁ ।

X X X X

ରେଡ଼ିଓରେ ଗୀତ ଗାଇ ଚାଲି ଚାଲି ଆସି ମଲ୍ଲୀ ଘରେ ପହୁଞ୍ଚିଲି । ହଠାତ୍ କାଶଟାଏ ହେଲା । ହାବୁକେ ରକ୍ତ ବାହାରିଆସିଲା । ମୁଁ ଅତରଛିଆ ମଲ୍ଲୀକି ଡାକି କହିଲି– ମଲ୍ଲୀ, ଦେଖିଲୁ ଏ କ'ଣ ? ସେ ଚମକିପଡ଼ିଲା । ତା ଆଖି ବାହାରିପଡ଼ିଲା ।

କୁଳି କରିବାକୁ ସେ ପାଣି ଦେଲା । ମୁଁ କୁଳି କଲି । କହିଲା– ତମ ଦେହ ଭଲ ନାହିଁ– ଡାକ୍ତର ଦେଖେଇବ ଯା ।

ମୋତେ କିମିତି ଛାନିଆ ଲାଗିଲା । ଏକେ ଥକିଥିଲି, ତା'ପରେ ରକ୍ତଗୁଡ଼ାକ ଦେଖି ମୋ ଦେହ ଝିମିଝିମି ହେଲା । ମଲ୍ଲୀର ପଲଙ୍କ ଉପରେ ଯାଇଁ ଗଡ଼ିଗଲି ।

ମଲ୍ଲୀ କହିଲା– ଶୁଅନାହିଁ– ଯା, ଏଇଲେ ଡାକ୍ତର ଦେଖେଇବ ।

ମୁଁ କହିଲି– ମଲ୍ଲୀ, ଡାକ୍ତର ଡାକିପଠା– ମୁଁ ଆଉ ଚାଲିପାରିବିନାହିଁ ।

କାହା ହାତରେ ଡକାଇବି ? ଏଠି କିଏ ଅଛି ? ମୁଁ ପଛେ ରିକ୍ସା ଡାକିଦଉଛି, ତମେ ଯା ।

ମୁଁ ବୁଝିପାରିଲି । ମଲ୍ଲୀ ଭିତରେ ଗୋଟାଏ ସତର୍କ ଆତଙ୍କ ଥିଲା ।

ମଲ୍ଲୀ ରିକ୍ସା ଡାକିଦେଲା । ମୋତେ କହିଲା – ଆସ ।

ମୁଁ ଉଠି ବସିଲି । ଡାକିଲି– ମଲ୍ଲି !

କ'ଣ ?

ଏଠିକି ଆସ ।

ସେ ପାଖକୁ ଆସିବାକୁ ଶଙ୍କିଲା । ମୁଁ ତାକୁ ଦଶଟଟଙ୍କା କାଢ଼ି ଦେଲି– ରଖିବାକୁ । ସେଦିନ ରେଡ଼ିଓରୁ ପାଇଥିଲି । ସେ କହିଲା– ନାଇଁ ନାଇଁ ଥାଉ, ଆଉଦିନେ ଦବ ।

ମୋ ହାତରୁ ଜୀବନ ବାହାରିଯାଉଥିଲା । ନୋଟ ଖଣ୍ଡଟା ଉପରେ ଜାବ ପଡ଼ିଗଲା ଯେମିତି । ମୁଁ ଉଠି ଠିଆହେଲି । ମଲ୍ଲୀ ମୋଠାରୁ ଟିକିଏ ଦୂରରେ । ମୁଁ ବଳ ସଂଗ୍ରହକରି ତା ପାଖକୁ ଗଲି । ତା କାନ୍ଧରେ ହାତ ପକେଇଦେଲି । ସେ ଆଜି ଆଉ ମୋ ଛାତି ଉପରେ ଢଳିପଡ଼ିଲାନାହିଁ । ମୋ ହାତଟାକୁ ଧୀରେ ଧୀରେ ତା'କାନ୍ଧରୁ କାଢ଼ି କହିଲା– ଚାଲ– ଜଲ୍‌ଦି ଚାଲ । ମୁଁ ତା' ମୁହଁ ପାଖକୁ ମୁହଁ ନେଉଥିଲି । ସେ ମୁହଁ ବୁଲାଇଦେଲା, କହିଲା– ହେଇଟି ରିକ୍‌ସାବାଲା ଘଣ୍ଟି ବାଡ଼େଇଲାଣି– ଚାଲ ।

ମୁଁ କାରଣଟା ବୁଝି ନବୁଝିଲା ଭଳି ହେଲି । ତେବେ ମନରେ ଏତିକି କିଏ କହିଦେଲା– ତୁ ବୋଧହୁଏ, ଆଜି ତା'ଠୁଁ ଗୋଟାଏ ମିଛ ଜିନିଷ କିଛି ଚାହୁଁଥିଲୁ – ମାୟାର ଅଭିନୟ ଲୋଡ଼ୁଥିଲୁ– ସେଥିପାଇଁ ସେ ଫାଙ୍କିଦେଲା । ଅସହ୍ୟ ସହାନୁଭୂତି– ମୂଲ୍ୟହୀନ ସାହାଯ୍ୟ ପ୍ରାର୍ଥନାକୁ ସେ ଠୋକର୍ ମାରିଦେଲା ।

X X X X

କିନ୍ତୁ ଦୁଃଖ କ'ଣ ? ଦୁନିଆରେ ଢେର୍ ମଲ୍ଲୀ ଅଛନ୍ତି । ଆହୁରି ଭଲ ମଲ୍ଲୀ ମୁଁ ଖୋଜିଲି ।

ଡାକ୍ତର ମନାକଲା– ଗୀତ ଗାଇବାକୁ ।

କିନ୍ତୁ ତା' କିମିତି ହବ ? ପଇସା ଆସିବ କେଉଁଠୁ ? ଖାଇବି କ'ଣ ? ପାର ମଲ୍ଲୀ ସବୁ ନେବେ କ'ଣ ? ନା ଗୀତ ମୁଁ ଗାଇବି । ଗୀତ ଗାଇବାକୁ ବାଧ ମୁଁ । ଗୀତ ନଗାଇ ରହିପାରିବିନାହିଁ– ପାରିଲି ନାହିଁ ମଧ । ଗୀତ ଗାଇବସେ, ବଡ଼ ଥକ୍‌କା ଲାଗେ । ଶୋଇ ପଡ଼େ । ରାତି ଅଧରୁ ନିଦ ଭାଙ୍ଗେ । ଉଠି ଦେଖେଁ, ଦିନେ ଦିନେ, ଯେମିତି ବିଛଣାପାଖରେ କି୍‌ଏ ବସିଥିଲା । ତା ଦିହର ପବନଟା ଯେମିତି ମୋ ଦିହରେ ବାଜୁଛି । ମୋ ବିଛଣା ଘାଣ୍ଟି ହୋଇଯାଇଛି । ଆଉ ଗୋଟାଏ ବାସନା ବିଛଣା ସାରା ଢାଳିହୋଇପଡ଼ିଛି ଯେମିତି । ମୁଁ ପଚାରେ କିଏ ? ମୋ ଓଠରେ ତିନୋଟି ସରଳ ଅକ୍ଷର ରୂପ ଧରିନିଏ–ଚ-ପ-ଳା । ମୁଁ ହସେ । ଗୋଟାଏ ଜିନିଷ । ନିଆଁ ଲଗାଇ ଧୂନିଜାଳିଦେଇ ଆସିଛି– ଆଉ ମୋର ବୋଲି ଯାହା ଥିଲା ଅଇଘେରା ଭିତରକୁ ବାଇଗଣ ଛାଟିଲା ପରି ଫୋପାଡ଼ି ଦେଇ ଆସିଛି । ଆଜି ଆଉ ପୁଣି ସେ ଭସ୍ମ ପାଉଁଶ ଭିତରୁ ଅଣ୍ଡାଳି ଖୋଜୁଛି କ'ଣ – କାହିଁକି ?

ମୁଁ ଚପଳାଙ୍କୁ ଭୁଲିଯାଇଥିଲି । ହଁ, ଭୁଲିଯାଇଥିଲି । କିନ୍ତୁ ଛାତିର ସେଇ ରକା ଜାଗାଟା ମୋର ବରାବର ମନେପଡ଼େ । ମୋତେ କାଶ ହେଲାବେଳେ, ମନେହୁଏ ସେ କାଶଟା ସେଇ ଜଖମ ଜାଗାରୁ ଯେମିତି ଉଠୁଛି । ରକ୍ତ ଉଠେ, ସେ ବି ଯେମିତି ସେଇ ଦରଜ ଦିହରୁ ।

ସେଦିନ ମଲ୍ଲୀ କଥା ମନେପଡ଼ିଲା । କଷ୍ଟ ହେଲା । ଦେହରେ ଜର ଥାଏ– ଭାରି ଜର । ବେଳେ ବେଳେ କାଶ ହୁଏ । କାଶି କାଶି ଥକିପଡ଼େ । କାଶ ଯେତେବେଳେ ବନ୍ଦହୁଏ, ସେତେବେଳେ ଭାବେ, ମୁଁ ମଲ୍ଲୀ ପାଖକୁ କାହିଁକି ଗଲି ? ସେଠୁଁ ମୁଁ କ'ଣ ଆଣିଛି ? ଚପଳା ମୋତେ କ'ଣ ଦେଇଥିଲେ– ମୁଁ ତାଙ୍କୁ କ'ଣ ଦେଇଛି ? ଦେଖିଲି ହୃଦୟଟା ଫାଙ୍କା– ସବୁ ଶୂନ୍ୟ ।

ମନ୍ଦ ନୁହେଁ ତ । ଗୋଡ଼ିମାଟିରେ ହୃଦୟଟାକୁ ପୂର୍ଣ୍ଣ କରି କି ଲାଭ ? ଏମିତି ଶୂନ୍ୟ ହୃଦୟ ଘେନି ବଞ୍ଚିବାରେ କ୍ଷତି କଅଣ ?

ପୁଣି ମନରେ ହେଲା, ମଲ୍ଲୀ ସାଙ୍ଗରେ ଚପଳାର ତୁଳନା ଠିକ୍ ନୁହେଁ । ଦୁହେଁ ଅଲଗା– ତଫାତ୍ । କିନ୍ତୁ ଏଟା ତ ଲୁଚାଇ ପାରିବିନାହିଁ ଯେ, ଚପଳାକୁ ଭୁଲିବାପାଇଁ ମୁଁ ମଲ୍ଲୀପାଖକୁ ଯାଇଥିଲି– ପାରପାଖକୁ ଯାଇଥିଲି । ତା'ହେଲେ କ'ଣ ପ୍ରତ୍ୟେକ ଭଲପାଇବା ମୂଳରେ ଏଭଳି ଗୋଟାଏ ବୀଭତ୍ସ ମନୋଭାବ ଲୁଚିଥାଏ ? ମୁଁ ବିବ୍ରତ ହୋଇପଡ଼ିଲି ।

X X X X

ହାସପାତାଳ !

ବାଧ୍ୟହୋଇ ହାସପାତାଳରେ ପଡ଼ିଲି । ଆଉ ଗୀତ ଗାଇବାକୁ ଯାଇପାରିଲିନାହିଁ । ଖାଇବାକୁ ପାଇଲିନାହିଁ । ମୋତେ ଖାଇବାକୁ ଦବ କିଏ ? ହାସପାତାଳରେ ନପଡ଼ି କ'ଣ କରନ୍ତି ?

ବର୍ତ୍ତମାନ ମୋ ପାଖରେ କେହି ନାହାନ୍ତି । ମଲ୍ଲୀ ନାହିଁ, ପାର ନାହିଁ– କେହି ନାହିଁ । ସବୁ ମଲ୍ଲୀ, ସବୁ ପାର ପାରିହୋଇ ଯାଇଛନ୍ତି । ସଂସାର ଏଇୟା । ସେଥିପାଇଁ ମୋର ଦୁଃଖ ହେଉନାହିଁ, ଆଦୌ ନୁହେଁ ।

ତେବେ କେହି ନଥିବା ବେଳେ ମୋର ଚପଳାଙ୍କ କଥା ମନେପଡ଼େ । କାହାରିକି ନପାଇ ଦିନେ ମୁଁ ତାଙ୍କୁ ଧରିଥିଲି । ତାଙ୍କର ସେମିତି କେହି ନଥିବା ବେଳେ ସେ ମୋତେ ଦିନେ ଧରିଥିଲେ । ଆଜି ମୋର କେହିନାହାନ୍ତି– ତଥାପି ମୁଁ ତାଙ୍କୁ ଧରିରଖିନାହିଁ । ସେ ବି ମୋତେ ଧରିରହିନାହାନ୍ତି । ତାଙ୍କର ଯେ ଆଜି କେହିନାହାନ୍ତି, ଏମିତି ନୁହେଁ । ମଣିଷ ବୋଧହୁଏ, ଖାଲି ଜୀଇଁବାପାଇଁ, ସବୁବେଳେ ତାର ଜୀଇଁବାର ଉପକରଣ ଗୋଟାଉଥାଏ– ଯେଉଁଟାକୁ ଯେତେବେଳେ ନିଜର ଉପଯୋଗୀ ଦେଖେ ତାକୁ ସାଉଁଟି ନିଏ; ଯେଉଁଟା ଦରକାର ନୁହେଁ ବୋଲି ମନେକରେ, ଫିଙ୍ଗିଦିଏ ।

ଏଇ ଚପଳାଙ୍କ କଥା ମନେପଡ଼ିଲେ ସଂସାରର ଏଇ ନିର୍ମମତା ପାଇଁ ମୋର କଷ୍ଟ ହୁଏ, ଭାରି କଷ୍ଟ ହୁଏ – ଓଃ, ଛାତି ଫାଟିଯାଏ ।

କିନ୍ତୁ ଆଜି ଏଇ କଥାଟାକୁ ମୁଁ ଏଡ଼ିଦବାକୁ ଚାହୁଁନାହିଁ । ବିଛଣାରେ ଏକା ଏକା ପଡ଼ି ପଡ଼ି ମୁଁ ତାକୁ ବେଶ୍ ଉପଭୋଗ କରି ଶିଖୁଛି । ଚପଳାଙ୍କ ପାଖରେ ଥିଲାବେଳେ ମୁଁ ନିଜକୁ ଚିହ୍ନି ଶିଖିଲି– ପାର, ମଲ୍ଲୀଙ୍କ ପାଖରେ ମୁଁ ନିଜକୁ ଚିହ୍ନାଇଲି– କିନ୍ତୁ ଉଭୟ କ୍ଷେତ୍ରରେ ମୁଁ ଯାହା ପାଇନଥିଲି ଆଜି ତା ପାଇଛି ।

ମୁଁ ଯେ ବଞ୍ଚିଛି – ମୋର ଯେ ଗୋଟାଏ ସ୍ୱତନ୍ତ୍ର ସତ୍ତା ଅଛି, ଏଇଟା ମୋର ପ୍ରତି ଲୋମକୂପ ଚିତ୍କାରକରି କହୁଛି । ମଣିଷ ଯେତେବେଳେ ଦୁଃଖଟାକୁ ନିହାତି ଆପଣାର କରି ପ୍ରତି ଶିରାରେ ଶିରାରେ ଉପଲବ୍ଧି କରି ଶିଖେ, ସେତେବେଳେ ସେ ବୁଝେ ସେ ଅଛି । ତାର ସେହି ଦୁଃଖ ତାକୁ ଡାକି କହିଦିଏ, ତୁ ନଥିଲେ, ମୁଁ ତୋର ହୁଅନ୍ତି କେମିତି ?

ହାସପାତାଳରେ ନର୍ସ ମୋରି ପାଖରେ ଗୋଟିଏ ରୋଗୀ ପ୍ରତି ତାର ସହାନୁଭୂତି ପକ୍ଷପାତିତା ଦେଖି ମୋତେ ହସମାଡୁଥିଲା । ସେ ରୋଗୀଟି ଚାଲିଗଲା । ସେଠି ଆଉ ଗୋଟିଏ ରୋଗୀ ରହିଲା । ନର୍ସଟି ଆଉ ସେତେ ବେଶି ମୋ ଖଟ ପାଖ ଖଟକୁ ଆସେ ନାହିଁ । ଆଉ ଗୋଟିଏ କଣରେ ତାକୁ ବେଶି ଦେଖେ । ଏ ବି ଗୋଟିଏ ଜୀବନ । ମୋତେ ଯେମିତି କିଏ କହିଲା– ଏଇ ତ ଜୀବନ– ଏଇ ତ ଜୀବନ ସାର... ।

X X X X

ଯକ୍ଷ୍ମା !

ମୁଁ ଚମକିପଡ଼ିଲି; କିନ୍ତୁ ପରମୁହୂର୍ତ୍ତରେ ମୁଁ ଭାରି ଖୁସିହେଲି । ଆନନ୍ଦରେ ମୋ ହୃଦୟ ନାଚିଉଠିଲା । ମରଣ ଯେମିତି ମୋତେ ସବୁଠୁଁ ଆପଣାର ମନେହେଲା । ସେ ଯେମିତି ମୋତେ ଆଲିଙ୍ଗନ କରୁଛି । ମୁଁ ଆଖି ବୁଜି ତାର ସ୍ପର୍ଶ ଅନୁଭବ କଲି । ମୋର ଦୁଃଖ କଷ୍ଟ ସବୁ ଚାଲିଯାଇଛି । ଚପଳା ଆଉ ନାହାନ୍ତି– ସଂସାର ଆଉ ନାହିଁ– ଦୁର୍ବଳତା ଉଭେଇଯାଇଛି । ମୁଁ ମୁକ୍ତ ।

ହାସପାତାଳରେ ଆଉ ରଖିଲେନାହିଁ । କହିଲେ, ଘରକୁ ଯାଅ । ବଞ୍ଚିବାର ଆଉ ଆଶା ନାହିଁ । ମୁଁ ଖୁସିହେଲି; କିନ୍ତୁ ଯିବି କିମିତି ? ମୋ ପାଖରେ କିଛି ନାହିଁ । ହଠାତ୍ ହାତର ମୁଦିଟା କଥା ମନେପଡ଼ିଲା । ସେଇଟା ଆଙ୍ଗୁଳିରୁ ବାହାରିପଡୁଥିଲା ହୁଗୁଳାହୋଇ ।

ଚାହିଁଦେଲି, ମୁଦିଟା ନାହିଁ । ମନେପଡ଼ିଲା– ଚପଳା ସେ ଦିନ କହିଥିଲେ ଏହା ହଜେଇବନାହିଁ । ମଲ୍ଲୀ ସେଦିନ ମାଗିଥିଲା– ମୁଁ ଦେଇନଥିଲି । ଆଜି ସେ ବଳେ ବଳେ ହଜିଯାଇଛି । ତାର ମୋ ପାଖରେ ଆଉ କିଛି କାମ ନାହିଁ । ସେ ସବୁ ସାରିଦେଇ ଯାଇଛି ।

ନର୍ସ ଆସି କହିଲା– ଏ ମୁଦିଟା ଆପଣଙ୍କର ?

ମୁଁ ଉତ୍ତରଦେଲି– ହଁ ।

ସେ ମୁଦିଟା ଦେଲା, ମୁଁ ପୁଣି ତା'ରି ହାତକୁ ବଢ଼େଇଦେଲି । ସେ ଆଶ୍ଚର୍ଯ୍ୟ ହେଲା । ମୁଁ ଯାଚିଲି, ସେ ମନାକଲା । ଭାବିଲି, ସତେ – ଯାହାପାଇଁ ଜୀବନଟାକୁ ତିଳ ତିଳ କରି ଜାଳିଦେଇ ଆସିଲି, ତାକୁ ଏମିତି ଖାଲି ଖାଲି ଦାନ ଦେଇ ଚାଲିଯିବି, ନା ? ମୁଁ ନର୍ସକୁ କିଛି ଟଙ୍କା ସାହାଯ୍ୟ ମାଗିଲି । ସେ ଦୟାକରି ଦେଲା– ହଁ, ଦୟା !! ତା'ରି ମୂଲ୍ୟରେ ମୁଁ ମୁଦିଟି ଦେଇଦେଲି ।

X X X X

ଆଜି ଘରକଥା ମନେପଡ଼ିଲା । ସେଇ ନିର୍ଜୀବ ଘରର କାନ୍ଥ, ବାଡ଼, ମଥାନ, ଚଟାଣ, ଦାଣ୍ଡ, ଅଗଣା, ମୋତେ ସବୁ ଯେମିତି ଆହ୍ୱାନ କରୁଛନ୍ତି ଆଜି । ବାପ ମା ମଣିଷ– ନରମରୁ ଗରମ ହୋଇପାରନ୍ତି– କୋମଳରୁ କଠିନ ହୋଇପାରନ୍ତି– କିନ୍ତୁ ସେ ସବୁ ଯେମିତିକି ସେମିତି ।

ଘରକୁ ଯେତେବେଳେ ଛାଡ଼ିଆସିଲି– ସେତେବେଳେ ମନଟା, ପ୍ରାଣଟା ସେଇ ଘରର ପାଖେ ପାଖେ ବୁଲୁଥିଲା– ଦେହଟା ପଳେଇଆସିଲା । ବାଧହୋଇ ସେମାନେ ଦୂର ହେଲେ; କିନ୍ତୁ ଆଜି ଯେତେବେଳେ ମନ ପ୍ରାଣ ଡାକୁଛି – ଦେହ ସେତେବେଳେ ନାରାଜ– ଅକ୍ଷମ ।

ମୁଁ ଘରକୁ ଛାଡ଼ିଥିଲି– ଘର ମୋତେ ଛାଡ଼ିନାହିଁ ତ ? ଆଜି ବି ଘରକୁ ଗଲେ ଘର ମନାକରିବନାହିଁ । ସେ ଘରେ କେତେ ସ୍ମୃତି – କେତେ ମୋହ– କେତେ ମାୟା– ମମତା– ଦିହର ଗୋଟାଏ ଅଙ୍ଗ ପରି । ଆଜି ଯେତେବେଳେ ଦିହ, ଦିହରୁ ପ୍ରାଣଟା ଆସ୍ତେ ଆସ୍ତେ ଛାଡ଼ିଯାଉଛି, ସେତେବେଳେ ବାହାରର ସେହି ଆଶ୍ରୟଟାଆଡ଼କୁ ମନ ଦଉଡ଼ିଛି । ଜୀଅନ୍ତା ଜିନିଷର ଯେତେବେଳେ ଆଶା ତୁଟିଯାଉଛି, ସେତେବେଳେ ମାଟି ପଥର ମଲା ଶୁଖିଲା ଜିନିଷରେ ମାୟା ହେଉଛି କାହିଁକି ?

X X X X

ନା–ନା, ନାଉରି, ଏ ଘାଟରେ ତୁ ନଉକା ଖଟା'ନା !

ବାବୁ, ଏଇଠି– ପାଖରେ ମୋ ଝିଅଘର । ମୁଁ ଟିକିଏ ଦେଖିଆସେଁ– ସାଙ୍ଗେ ସାଙ୍ଗେ ନାଆ ଛାଡ଼ିଦେବି । ବେଶି ଡେରିହେବନାହିଁ ।

ନାଉରି, ମୋ କଷ୍ଟ ତୁ ବୁଝିବୁନାହିଁ ।

ବାବୁ, ଆଉ କେତେ ବାଟ ? ମୁଁ ସାଙ୍ଗେ ସାଙ୍ଗେ ଆସୁଛି– ତମକୁ କିଛି କଷ୍ଟ ହେବ ନାହିଁ– ମୁଁ ଏଇ ସାଙ୍ଗେ ସାଙ୍ଗେ– ଗୋଟିଏ ବୋଲି ଝିଅ ବାବୁ, ଯାଉଣୁ ଆସୁଣୁ ମୁଁ ଥରେ ତାକୁ ନଦେଖିଲେ ମନଟା ଥୟଧରେନାହିଁ ।

ମୋତେ ହସମାଡ଼ିଲା, ନାଉରିର ବି ହୃଦୟ ଅଛି ତ ! ହାୟରେ ପାଗଳ ! ସେ ଝିଅ ଆଉ କ'ଣ ତୋ ଝିଅ ହେଇ ଅଛି ? ତୁ ତାକୁ ପଚାରୁଛୁ, ସେ ତୋର ଝିଅ କି ଆଉ କାହାର ସ୍ତ୍ରୀ ? ତଥାପି ତା' ଝିଅକୁ ଯାଉଣୁ ଆସୁଣୁ ଥରେ ନଦେଖିଲେ ନହେବ । ତଥାପି ତା ଝିଅ ସେହି ଛୁଆ ଝିଅଟି ହେଇ ଅଛି ବୋଲି ତାର ବିଶ୍ୱାସ । ଏ ଅନ୍ଧବିଶ୍ୱାସ କରି ନାଉରିର କି କ୍ଷତି ହୋଇଛି ?

ନାଉରି ମାନିଲାନାହିଁ । ନଉକା କୂଳ ଆଡ଼କୁ ଚାଲିଲା । ଏଇ ଘାଟ, ଏଇ ବାଟ, ଏଇ ତଟ, ଏଇ ତୋଟା– ନାଃ–ନାଉରି, ଓଃ !

—– ନାଉରି – ତୁ ବୁଝିବୁନାହିଁ– ତୁ ବୁଝିପାରିବୁନାହିଁ ।

ନାଆ କୂଳରେ ଲାଗିଗଲା ।

X X X X

ମୋର ଯେତେବେଳେ ଚେତାହେଲା– ନାଉରି ସେତେବେଳକୁ ଫେରିଥାଏ । ଗୋଟାଏ ଗୋଳମାଳ ଶୁଭିଲା । ନାଆ ଚାଲିଲାଣି । ମୁଁ ପଚାରିଲି– କି ଗୋଳମାଳ ?

ବାବୁଘର କଲକତା ଯାଉଛନ୍ତି ।

କିଏ ?

ବାବୁଙ୍କ ପୁଅବହୂ ।

କଉଁ ପୁଅ ?

ତାଙ୍କର ଆଉ କେଇଟା ପୁଅ କି ? ବଡ଼ ତ ପାଞ୍ଚବର୍ଷ ହେଲା ଗଲେଣି ।

ମୁଁ ବୁଝିପାରିଲି । ପୁଣି ଥରେ ପଚାରିଲି– କେଉଁଠିକି ଯାଉଛନ୍ତି ?

କଲିକତା ।

ତୁ କେମିତି ଜାଣିଲୁ ?

ଏଇ ଘାଟରେ ତ ନଉକା ଚଢ଼ି ଗଲେ । କୁହାକୁହି ହେଉଥିଲେ ପରା !

ଏଇଘାଟ ବାଟେ ?

ହଁ ବାବୁ, ଏଇ ଘାଟବାଟେ । ତମେ ପରା ଶୋଇପଡ଼ିଥିଲ ! ସେତେବେଳେ ମୋତେ ଏଇଠି ସାନବାବୁ ପଚାରିଲେ ।

କ'ଣ ପଚାରିଲେ ?

ପଚାରିଲେ– ନଉକା କେଉଁଠିକି ଯିବ ?

ତୁ କ'ଣ କହିଲୁ ?

ମୁଁ ତମ ଗାଁ ନାଁଟା କହିଦେଲି ।

ଗାଁ ନାଁ କହିଦେଲୁ ?

କହିବିନାହିଁ କାହିଁକି ? ଆମେ କ'ଣ ଚୋର ନା ଖଣ୍ଟ ଯେ ଡରିବୁ ?

ଆଉ କିଏ ଥିଲା ?

ତାଙ୍କ ରାଣ୍ଡ ଭାଉଜ– ବାବୁଙ୍କ ବଡ଼ ବହୂ ।

ବଡ଼ ବହୂ– ଠିକ୍ ଜାଣୁ ?

ହଁ, ବାବୁ– ଭଲକରି ଜାଣେ । ଗଲା ବର୍ଷ ଝିଅ ବାହା ହେଲା ଦିନଠୁ ନିତି ନିତି ସେ ଗାଁକୁ ଯାଉଛି– ତାଙ୍କ ଘରେ ମାଛ ଦେଇଛି– ତାଙ୍କୁଇ କିଜାଣି ଶହେଥର ମାଛ ବିକିଥିବି ।

ସେ କଅଣ କରୁଥିଲେ ?

ଠିଆହେଇଥିଲେ ।

ତା ପରେ ?

ନା– ଆଉ କିଛି ନାହିଁ ।

ଆଉ କିଛି କହିଲେନାହିଁ ?

ହଁ, ହଁ, କିଏ ଯାଉଛି ବୋଲି ପଚାରିଲେ ବୋଲି ପରା କହୁଛି ।

ତା ପରେ ?

ତା ପରେ ଆଉ କ'ଣ ପୁଣି ?

ତୁ କ'ଣ କହିଲୁ ?

କହିବି ଆଉ କ'ଣ– ତମ କଥା କହିଲି ।

ତା ପରେ ?

ସେଥିରୁ ତୁମେ କି ପାଇବ, ସେ ତ ଚାଲିଗଲେ– ଗଲା, କଥାଛିଡ଼ିଗଲା । ଆଉ ପୁଣି ତା ପରେ ତା ପରେ । ମୁଁ କ'ଣ ଜବାବ୍ ଦେବି ଏଥିର ଭଲା !

ନାଉରି ତା'ର ଗୀତ ଯୋଡ଼ିଦେଲା.......

ନାଉରି !

କ'ଣ ବାବୁ ?

ସେ କିଛି କହିଲେନାହିଁ ?

ନା ।

ସେମିତି ଚାଲିଗଲେ ?

ହଁ ।

ଆଉ କିଛି ପଚାରିଲେ ନାହିଁ ?

ନା

ଏଇ ବାଟେ ଚାଲିଗଲେ ?

ହଁ, ବାବୁ ହଁ– କେତେ ଥର କହିବି ସେଇୟା ସେଇୟା !

ନାଉରି ବିରକ୍ତ ହେଲା ।

ମୁଁ ଆଜି ଖୋଜିଲି । ଯେଉଁ ଜିନିଷଟାକୁ ଦିନେ ଭୁଲିଯିବାକୁ ଚେଷ୍ଟାକରି ମୋର ଏଇ ଦଶା, ଆଜି କାହିଁକି ହଠାତ୍ ମୋର ତା କଥା ଭାରି ଜୋର୍‌ରେ ମନେପଡ଼ିଲା । ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ମୁଁ ଦେଖିଲି– ମୁଁ ତାକୁ ଏତେଦିନ ଭୁଲିବାକୁ ଚେଷ୍ଟାକରି, ତାକୁ ଅତି ନିଷ୍ଠୁର ଭାବରେ ଅବହେଳା କରି କରି – ତାର ସର୍ବନାଶ କରିଛି– ସତ୍ୟାନାଶ କରିଛି । ହୃଦୟ ମୋର ନାରଖାର ହୋଇଯାଇଛି । ସେହି ହୃଦୟ.....

X X X X

ମୁଁ ଘରେ ପହଁଞ୍ଚିଛି । ଘରଟା ମୋତେ ଚାରିଆଡ଼େ ଘେରିରହିଛି– କିନ୍ତୁ ମୁଁ ଯେମିତି ଛାଟିପିଟି ହେଉଛି ପଳାଇବାପାଇଁ ।

ବାପା ବସି ମୁଣ୍ଡଉପରେ କାନ୍ଦୁଥିଲେ । ମା ତଳେ ବସିଥାଏ । ଭାରି ଦୁର୍ବଳ ଲାଗିଲା । ଦେହଟା ଜଳିଲା । ଗୋଟାଏ ଶୋଷ ମୋ ପେଟରୁ ବାହାରି ଆସି ମୋତେ ହିକୁଟି ହେଲା ।

ମୁଁ ସପନ ଦେଖିଲି– ମୋ ମା–ମୋତେ ଯିଏ ଜନ୍ମକରିଥିଲା, ମୋର ସେଇ ମା, ମୋତେ ଆସି କହୁଛି– ବାପ, ଆ – ମୁଁ ଅନେକ ଦିନରୁ ତୋତେ ଚାହିଁବସିଛି । ମୁଁ ନ ଥିଲେ ତୁ ସବୁ ହୁଡ଼ିଯାଉ– ସବୁ ଭୁଲ୍‌କରି ବସୁ । ଏତୁଟେ ହେଲୁ– ଆଉ କେବେ ଶିଖିବୁ ? ଜୀବନଟା ଖାଲି ଭଲପାଇବାପାଇଁ ନୁହେଁ– ଜୀବନପାଇଁ ଭଲପାଇବାର ସୃଷ୍ଟି । ବାପାଙ୍କୁ ଡାକି କହିଲି– 'ବାପା, ମୁଁ କ'ଣ ବଞ୍ଚିନାହିଁ ?'

X X X X

[ ଶେଷ ]